# ପ୍ରୀତିସୁଧାକର

ଶ୍ରୀ ଗୋପାଳବଲ୍ଲଭ ଦାସ ଏମ୍. ଏ. ଙ୍କ ଦ୍ୱାରା

ସଙ୍କଳିତ



# ପ୍ରୀତି ସୁଧାକର ।



( ଶ୍ରୀ ରାଧା କୃଷ୍ଣଙ୍କ ପ୍ରୀତି କୌତୁକ ସମ୍ବନ୍ଧୀୟ ଅନ୍ୟ
ଅନେକ ଚଉପଦୀ ଚମ୍ପୂ ବା ଗୀତି ନାଟକ )
ରୂପେ ।

ଶ୍ରୀ ଗୋପାଳବଲ୍ଲଭ ଦାସ ଏମ, ଏ,ଙ୍କ ଦ୍ୱାରା
ସଙ୍କଳିତ ।



To the seven notes of music the world owes its being. and should music cease for the fraction of a second the day of doom would be upon us— Lacy Baker

A man who takes a daily dose of music will live longer and better than who does not-Lord Bacon.



PRINTED AT THE EDWARD PRESS,

CUTTACK.

1906.

(…ered)

# ସୂଚୀପତ୍ର ।

## ପ୍ରଥମ ଅଙ୍କ ।

### ପ୍ରଥମ ଦୃଶ୍ୟ ।



—:*:—

### ଦ୍ୱିତୀୟ ଦୃଶ୍ୟ ।



—:*:—

### ତୃତୀୟ ଦୃଶ୍ୟ ।

—:*:—

ଦ୍ୱିତୀୟ ଦୃଶ୍ୟ ।



—:O:—

ତୃତୀୟ ଦୃଶ୍ୟ



—:X:—

ଚତୁର୍ଥ ଦୃଶ୍ୟ ।

।



—:o:—

ପଞ୍ଚମ ଦୃଶ୍ୟ ।



ତୃତୀୟ ଅଙ୍କ ।

—:o:—

ପ୍ରଥମ ଦୃଶ୍ୟ ।



—:o:—

ଦ୍ୱିତୀୟ ଦୃଶ୍ୟ ।

ତୃତୀୟ ଦୃଶ୍ୟ ।



—:୦:—

ଚତୁର୍ଥ ଦୃଶ୍ୟ ।



ପଞ୍ଚମ ଦୃଶ୍ୟ ।



## ଚତୁର୍ଥ ଅଙ୍କ ।

ପ୍ରଥମ ଦୃଶ୍ୟ ।

ଦ୍ୱିତୀୟ ଦୃଶ୍ୟ ।



ତୃତୀୟ ଦୃଶ୍ୟ ।



ଚତୁର୍ଥ ଦୃଶ୍ୟ ।

---

ପଞ୍ଚମ ଦୃଶ୍ୟ ।



---

## ପଞ୍ଚମ ଅଙ୍କ ।

---

ପ୍ରଥମ ଦୃଶ୍ୟ ।



---

ଦ୍ୱିତୀୟ ଦୃଶ୍ୟ ।

—:O:—

ତୃତୀୟ ଦୃଶ୍ୟ ।



—:O:—

ଚତୁର୍ଥ ଦୃଶ୍ୟ ।



—:O:—

ପଞ୍ଚମ ଦୃଶ୍ୟ ।



———

## ଷଷ୍ଠ ଅଙ୍କ ।

—:o:—

### ପ୍ରଥମ ଦୃଶ୍ୟ ।



—:o:—

### ଦ୍ଵିତୀୟ ଦୃଶ୍ୟ ।



—:—:—

### ତୃତୀୟ ଦୃଶ୍ୟ ।

---

## ଚତୁର୍ଥ ଦୃଶ୍ୟ ।



---

## ପଞ୍ଚମ ଦୃଶ୍ୟ ।



—:୦:—



# ଉପକ୍ରମଣିକା ।

ଆମ୍ଭମାନଙ୍କର ସୁପରିଚିତ କବି ବନମାଳୀ ଗୀତ ଗାଇ ଯାଇଅଛନ୍ତି ।

"ନବନାଗର କାହ୍ନା ମୁରଲୀ ବଜାଏ,
"ଶୁଖିଲା ତରୁରୁ ପଲ୍ଲବାଏ ।

ଶୀତରୁ ନୁହେ ତନୁ କମ୍ପାଏ, ବଣିକ ନୁହେ ମରମକୁ ପାଏ, ଶିଖି ନୃତ୍ୟେ ମାନସ ଘଟାଏ ।"

ତଦ୍ରୂପ ଗୋପାଳକୃଷ୍ଣ ମଧ୍ୟ କହୁଅଛନ୍ତି "ଶ୍ରୁତିରେ ସୁଧା ବରଷେ, ଧୃତି ନାଶେ ଅପଘନେ"। ଶ୍ରୀକୃଷ୍ଣଙ୍କ ବଂଶୀ ପ୍ରକୃତ ଶୁଖିଲା ତରୁ ପଲ୍ଲବାଉଥିବା "ଅସତ କଥାକୁ ସତ" କରାଉ-ଥିବା ନ ଥିବା କେହି ବିଶ୍ୱାସ କରନ୍ତୁ ବା ନ କରନ୍ତୁ

ଯେଉଁ ୨ ଚୌପଦୀର ଅଂଶମାନ ଉଦ୍ଧୃତ କରାହେଲା ତହିଁରେ ମୂରଲୀ ଧ୍ୱନିର ଶକ୍ତି ସମ୍ବନ୍ଧେ ଯାହା ଯାହା ବୋଲାଯାଇ ଅଛି ତାହା ଅକ୍ଷରେ ୨ ଯଥାର୍ଥ ବୋଲି ଜଣାଯାଏ । କାରଣ ଅମେରିକାସ୍ଥ ନିଉୟର୍କ ନଗରର ବିଖ୍ୟାତ ସଙ୍ଗୀତବିଶାରଦ ଡକ୍ଟରମାଷ୍ଟର ଶ୍ରୀଯୁକ୍ତ ଲେସି ବେକର ସାହେବ କହନ୍ତି ଯେ ସଙ୍ଗୀତର ସପ୍ତସ୍ୱରରୁ ଜଗତର ଉତ୍ପତ୍ତି, ଏବଂ ସେକେଣ୍ଡର ଭଗ୍ନାଂଶ ସମୟ ପାଇଁ ସଙ୍ଗୀତ ବନ୍ଦ ହେଲେ ପ୍ରଳୟ ଉପସ୍ଥିତ ହେବ । (To the seven notes of music the world owes its enistences and should music cease for a fraction of a second the day of doom would be upon us) କେହୁ ୨ କହି ପାରନ୍ତି ଯେ ସଙ୍ଗୀତକୁ ଜୀବିକା କରିଥିବାରୁ ସ୍ୱାର୍ଥ-ପରବଶ ହୋଇ ବେକର ସାହେବ ଏପରି କହିଅଛନ୍ତି; କିନ୍ତୁ ଧ୍ରାଗମେଣ୍ଟ (Fragment) ନାମକ ଖବର କାଗଜ କହନ୍ତି ଯେ ମୂର୍ଚ୍ଛା ରୋଗୀ କେବଳ ସଙ୍ଗୀତରେ ରୋଗ ମୁକ୍ତ ହୋଇ ସମ୍ପୂର୍ଣ୍ଣ ସ୍ୱାସ୍ଥ୍ୟ ଲାଭ କରିଥିବାର ଅନେକ ଘଟଣା ଦେଖାଯାଇ ଅଛି । ଉକ୍ତ କାଗଜରେ ଏହା ମଧ୍ୟ ପ୍ରକାଶ ଯେ ଅଳ୍ପଦିନ ହେଲା ନିଉୟର୍କ ନଗରରେ ବାତ-ରୋଗାକ୍ରାନ୍ତ ଜଣେ ଭୂତଳଶାୟୀ ପଥିକ କେବଳ ନିକଟରେ ଯାଉଥିବା ବ୍ରେଞ୍ଜ ବାଦ୍ୟ ଶ୍ରବଣରେ ଆରୋଗ୍ୟ ଲାଭ କରି ଉଠି ଚାଲି ଯାଇଥିଲା । ଏ ସବୁତ ଅଳ୍ପ କାଳର କଥା । ଶତ ଶତବର୍ଷ ପୂର୍ବେ ଆହାର ପରିପାକାର୍ଥେ ଭୋଜନାନ୍ତେ ସଙ୍ଗୀତ ଶୁଣିବା ଇଂଲଣ୍ଡର ବିଖ୍ୟାତ କବି ମିଲ୍‌ଟନ ସାହେବଙ୍କର ଅଭ୍ୟାସ ଥିଲା, ପୁଣି ସେଠାରେ ବିଖ୍ୟାତ ଦାର୍ଶନିକ ଲର୍ଡ ବେକନ ସାହେବ ଲେଖି ଯାଇଛନ୍ତି ଯେ ସଙ୍ଗୀତ ନ ଶୁଣୁଥିବା ଲୋକ ଅପେକ୍ଷା ପ୍ରତିଦିନ ତାହା ଶୁଣୁଥିବା ଲୋକ ଅଧିକ ବଳରେ ରହେ ଓ ଦୀର୍ଘଜୀବୀ ହୁଏ । (A man who takes a daily dose of music will live longer and better than who does not)*

---

* The Theosophist Vol XXVII No. 9 pages 714 and 715 June 1906.

ଯେଉଁମାନେ ପ୍ରଣବରୁ ସୃଷ୍ଟିର ଉତ୍ପତ୍ତି ବୋଲି ମାନନ୍ତି ସେମାନଙ୍କୁ ଏ କଥାମାନ କହିବା ବାହୁଲ୍ୟମାତ୍ର ।

ସଙ୍ଗୀତର ଚିତ୍ତ କମ୍ପାଇବା, ଧୃତି ହରିବା, ବ୍ୟାଧି ଦୂରିବା ପ୍ରଭୃତି ବହୁତ ଶକ୍ତିମାନ ଥିଲେ ସୁଦ୍ଧା କୌଣସି କାଳରେ କୌଣସି ଦେଶରେ ମାନବ କେବଳ କୋକିଳର କୁଜନ, ଭ୍ରମର ଗୁଞ୍ଜନ, ବୀଣାର ଝଙ୍କାର ବା ମୁରଲୀର ଶୀତ୍କାରରେ ପରିତୃପ୍ତ ନୁହେଁ; ଏହି ପରିତୃପ୍ତି କାଳ୍ପନିକ ବା ଅଳୀକ ନ ଥାଇ ଅନ୍ୟ ପ୍ରାଣିମାନଙ୍କ ପରି ମାନବର ସ୍ୱାଭାବିକ; କାରଣ କୋକିଳର କୁହୁ କୁହୁକୁ କୋକିଳ ଆଉ ଭ୍ରମରର ଗୁଣ ଗୁଣକୁ ଭ୍ରମର ବୁଝେ, ମନୁଷ୍ୟ ବୁଝେ ନାହିଁ ମନୁଷ୍ୟଠାରେ ସେ ସୁମଧୁର ସୁଲଳିତ ଲାଳନ ଯେପରି ବୀଣା ବଂଶୀର ସଙ୍ଗୀତ ସେହିପରି; ଧ୍ୱନିର ମାଧୁର୍ଯ୍ୟ ଭିନ୍ନ ଲାଳନରୁ ଭାବ ଆଉ କିଛି ପ୍ରକାଶ ପାଏ ନାହିଁ, ବୀଣା ପ୍ରଭୃତି ଯନ୍ତ୍ର ସଙ୍ଗୀତରୁ ସରଗମା ପ୍ରଭୃତିର ମାଧୁର୍ଯ୍ୟ ଭିନ୍ନ ଅନ୍ୟ କିଛି ଜଣାଯାଏ ନାହିଁ; ବୀଣା ମୁରଲୀରେ "ଶୀତଳରୁ ନୁହେଁ ଚନ୍ଦ୍ରକରମାଏ" ବଜାଇଲେ ଯାହା ଶୁଣାଯାଏ "ଚିନ୍ତାମଣି ନୁହେ ଝୁରି ହୁଏ" ବା "ବସିଣ ନୁହେଁ" "ମରମକୁ ପାଏ" ବଜାଇଲେ କେବଳ ତାହା ଶୁଣାଯାଏ, ତିନିଗୀତ ମଧ୍ୟରୁ କେଉଁ ପାଦକୁ ବାଜୁଛି ତାହା ଜଣାଯାଏ ନାହିଁ । ଏହି ହେତୁରୁ କୋକିଳର କୁଜନ ଅଧିକ ଶ୍ରୁତିପ୍ରିୟ ହେଲେ ସୁଦ୍ଧା ମନୁଷ୍ୟର କଥା ଅନୁକରଣ କରି ପାରୁଥିବାରୁ ଶୁଆ ଶାରୀଙ୍କର ଅଧିକ ଆଦର; ଶୁଖିଲା ଡାଳକୁ ପଲ୍ଲବାଇବା ଶକ୍ତି ଥିଲେ ସୁଦ୍ଧା ମୋହନ ବଂଶୀରେ "ରାଧା" ବୋଲି ଡାକିବାକୁ ପଡ଼ିଥିଲା । ଶ୍ରୀକୃଷ୍ଣଙ୍କ ମୁରଲୀ "ରାଧା" ଡାକୁଥାଉ ବା ନ ଥାଉ] ଅନ୍ୟ ପ୍ରାଣୀଙ୍କ ପରି ସପ୍ତସ୍ୱର ସଙ୍ଗେ ନିଜ ଭାଷା ଯୋଗ କରିବାକୁ ମାନବ ସଦା ପ୍ରୟାସୀ, ତାହା ନୋହିଥିଲେ ବୀଣା ପ୍ରଭୃତି ବାଦ୍ୟ ଯନ୍ତ୍ରମାନଙ୍କର ସୃଷ୍ଟି ଉତ୍ତାରୁ ଗାୟକ ଗାୟିକାଙ୍କର ଦେଖା ମିଳିଛି ଅଉ ନାମ ସୁଦ୍ଧା ଶୁଣା ନ ଥାନ୍ତା । ଯନ୍ତ୍ର ସଙ୍ଗୀତ ଅପେକ୍ଷା କଣ୍ଠ ସଙ୍ଗୀତ ଅଧିକ ସୁଲଳିତ

ବୋଲି ଭାଷା ଲୋପ କରା ଯାଇ ନାହିଁ ବୋଲି କହୁଲେ, ବୀଣା ପ୍ରଭୃତି ଯନ୍ତ୍ରମାନଙ୍କ ପରି ଗାୟକ ଗାୟିକାଏ କେବଳ ସ୍ୱରଗମ ପଧନି ବୋଲନ୍ତୁ ଥାନ୍ତେ; ଗୀତର ନାମ ସୁଦ୍ଧା ଶୁଣା ନ ଥାନ୍ତା । ସ୍ୱର ସଙ୍ଗେ ନାନା ଭାଷା ଯୋଗ କରିବା ଏହା ମନୁଷ୍ୟର ସ୍ୱଭାବ ନୁହେଁ; ପ୍ରାଣୀମାତ୍ରକେ ଏ ସ୍ୱଭାବର ବଶବର୍ତ୍ତୀ, ନିଜ ମନୋଭାବ ଅନ୍ୟକୁ ଜଣାଇବାକୁ ଓ ଅନ୍ୟର ମନୋଭାବ ଜାଣିବାକୁ ପ୍ରାଣୀମାତ୍ରକେ ପ୍ରକୃତି ପ୍ରଣୋଦିତ । ପୁଣି ଯନ୍ତ୍ର ସଙ୍ଗୀତ କେବଳ ଶ୍ରୁତିରେ ସୁଧା ବରଷେ; ଭାଷା କବିତା ସଙ୍ଗେ ସ୍ୱତନ୍ତ୍ର ଯୁକ୍ତ ହୋଇ ହୃଦୟରେ ଭାବତରଙ୍ଗ ଉତ୍ପାଦନ ଆଉ ମାନସ ପଟରେ ଚିତ୍ର ଅଙ୍କନ କରେ । ଉଭୟ ସଂଯୋଗରେ ଚନ୍ଦ୍ରା ଚନ୍ଦ୍ର ଗଙ୍ଗା ଯମୁନା ମଣିକାଞ୍ଚନ ମିଳନ ଘଟେ ।

ବର୍ତ୍ତମାନ ଯୁଗରେ ସ୍ୱର ତାଳ ମାନ ଯୁକ୍ତ କଥା କହିବାକୁ ସମସ୍ତ ଚାହିଁ; ଯେ କୌଣସି ପ୍ରକାରେ ମନୋଭାବ ପ୍ରକାଶ ହୋଇପାରିଲେ ହେଲା; ଏଣୁ ଦେଖୁଛୁ ଚଉକ ସୁର୍ଣ୍ଣୁତ, ଅମରକୋଷ, ଲୀଳାବତୀ, କ୍ଷେତ୍ରତତ୍ତ୍ୱ, ସିଦ୍ଧାନ୍ତ ଚନ୍ଦ୍ରିକାପର ଜବାନ, ଚଇସା, ଗଣିତ, ଅଷ୍ଟଧାତୁ ବ୍ୟାକରଣ ପ୍ରଭୃତି ଛନ୍ଦବନ୍ଧରେ ଲେଖା ଯାଉନାହିଁ କମ୍ବା ରଘୁ ଭଟ୍ଟୀ କୁମାରସମ୍ଭବ ଇଲିୟଡ଼, ମହାଭାରତ ରାମାୟଣ ପ୍ରଭୃତି ପରି ଗ୍ରନ୍ଥ ରଚନା ହେବାର ଦେଖା ଯାଉନାହିଁ; ମେଘନାଦ ବଧ, ମହାଯାତ୍ରା ପରି ଗ୍ରନ୍ଥ ରଚନା କରନ୍ତି । ଏଣୁକରି ବର୍ତ୍ତମାନ ଯୁଗକୁ ଗଦ୍ୟଯୁଗ କହିବା ଅସଙ୍ଗତ ନୁହେଁ ବୋଲି ଜଣାଯାଏ ।

ସଙ୍ଗୀତର ଅସୀମ ଶକ୍ତି କ୍ରମଶଃ ପ୍ରକାଶ ପାଉଥିବା ଓ ପ୍ରତିପନ୍ନ ହେଉଥିବାସ୍ଥଳେ ସ୍ୱରତାଳମାନ ଯୁକ୍ତ ଗ୍ରନ୍ଥ ରଚନା ବିଲୋପ ହୋଇ ଆସୁଥିବା ଉଚିତ ବୋଧ ହୁଏ; କିନ୍ତୁ ଏହା ପ୍ରକୃତ କଥା ନୁହେଁ । ଅମୂଲ୍ୟ ରତ୍ନାକର ହେଲେହେଁ ରଘୁକୁମାର ମହାଭାରତ ରାମାୟଣ ପ୍ରଭୃତି ବଡ଼ ବଡ଼ ଗ୍ରନ୍ଥମାନଙ୍କର ଚର୍ଚ୍ଚା ସୀମାବଦ୍ଧ, ଦଶ ପାଞ୍ଚଜଣ ବସି ମହାଭାରତ ରାମାୟଣ ପ୍ରଭୃତି ଶୁଣିଥାନ୍ତି; ପଣ୍ଡିତସଭାରେ

ରଘୁକୁମାର ପ୍ରଭୃତି ଆଲୋଚନା ହୋଇଥାଏ; କିନ୍ତୁ ବିବାହାଦି ଉତ୍ସବ ଉପଲକ୍ଷେ ଆମୋଦ ପ୍ରମୋଦ ପାଇଁ ପଣ୍ଡିତ, ମୂର୍ଖ, ଧନୀ, ମାଳୀ ପ୍ରଭୃତି ଏକତ୍ରିତ ହୋଇଥିବା ସ୍ଥଳରେ ରଘୁକୁମାର ଇନ୍ଦୁମତୀ ପାରିଜାତହରଣ ଲକ୍ଷ୍ମୀ ବୈଦେହୀଶବିଳାସ ବିଦଗ୍ଧଚିନ୍ତାମଣି ବ୍ରଜବିହାର ପରି ଗ୍ରନ୍ଥମାନ ନେଇ ଚର୍ଚ୍ଚାବିନୋଦ କରିବାର ଦେଖାଯାଏ ନାହିଁ କି ଶୁଣା ଯାଏ ନାହିଁ । ଏପରି ଦେଶ କାଳ ପାତ୍ର ପାଇଁ ଭିନ୍ନ ପ୍ରକାର ସଙ୍ଗୀତ ଉପଯୋଗୀ ହେବାରୁ ସବୁ ଦେଶରେ ସବୁ କାଳରେ ବିବେଚିତ ହୋଇ ଆସୁଅଛି । ଏହି ହେତୁରୁ କାବ୍ୟର ଉତ୍ସ କ୍ରମଶଃ ଶୁଖି ଆସୁଥିଲେହେଁ କବିତାର ସ୍ରୋତ ଶୁଖିବା ଭଳିକି ଥାଉ କ୍ରମଶଃ ବଢ଼ିଲାପରି ଜଣାଯାଏ; ତାହା ନୋହିଥିଲେ ଅନେକ ଗୀତ ଥରକେ ଶୁଣାଗଲାରୁ ବାସିଫୁଲ ପରି ପରିତ୍ୟକ୍ତ ହେଉ ନ ଥାନ୍ତା; ଏ ବର୍ଷ ନୂଆ ଆରବର୍ଷକୁ ପୁରୁଣା ହେଉ ନ ଥାନ୍ତା; ନୂଆ ନୂଆ ଗୀତ ଶୁଣା ଯାଉ ନ ଥାନ୍ତା । ଏହା ବୋଲି ଯେ ରଘୁକୁମାର ତିଲୋତ୍ତମା ଚନ୍ଦ୍ରକଳା ପ୍ରଭୃତି ଅପଦାର୍ଥ ତାହା ନୁହେଁ, ଏ ସବୁ ହୀରା ନୀଳା ମୋତି ମାଣିକ୍ୟର ହାର, ସବୁ କାଳରେ ସବୁ ଦେଶରେ ଆଦୃତ; କିନ୍ତୁ ଏ ସବୁ ସମସ୍ତେ ଜାଣନ୍ତି ନାହିଁ କି ଚହାନ୍ତି ନାହିଁ; ତେଣୁ ଏ ସବୁ ସମସ୍ତଙ୍କ ଠାରେ ଶୋଭା ପାଏ ନାହିଁ । ଚୌପଦୀ ଶ୍ରେଣୀର କବିତା ଫୁଲହାର, ଆଜି ଗଲେ କାଲିକି ବାସି; କିନ୍ତୁ ଏହାକୁ ସମସ୍ତେ ଜାଣନ୍ତି, ବ୍ୟବହାର କରି ପାରନ୍ତି; ଏହା ରାଜା ପ୍ରଜା ଧନୀ, ନିର୍ଧନୀ, ପଣ୍ଡିତ, ମୂର୍ଖ ସବୁରି ଗଳାରେ ଶୋଭା ପାଏ ଏବଂ ସମସ୍ତଙ୍କୁ ସୁଖ ଦିଏ ଏଣୁ କରି ଏ ଶ୍ରେଣୀର କବିତା ସାଧାରଣ ସ୍ୱର ରୁଚି ପ୍ରଭୃତିର ଆଦର ପାଇଛି; ଏ ସବୁ ଯଦି ଫୁଲପରି ସନ୍ଧ୍ୟେ ଫୁଟି ସକାଳେ ଯିବା ପଦାର୍ଥ ହେଲେ ମଧ୍ୟ ଏ ସବୁରୁ ସମାଜ ବିଶେଷର ସାମୟିକ ଭାବ ରୁଚି ପ୍ରଭୃତିର ଯେପରି ପରିଚୟ ମିଳେ ମହାଭାରତ ରାମାୟଣ ପ୍ରଭୃତିରୁ ସେପରି ମିଳେ ନାହିଁ; କାରଣ, ଏପରି ମହାଗ୍ରନ୍ଥମାନ ସବୁ ଦେଶ କାଳପାଇଁ

ଉଚିତ ଏବଂ ସବୁ ଦେଶ କାଳକୁ ଖଟେ । ସୁତରାଂ ସମାଜ ବିଶେଷର ସାମୟିକ ପ୍ରବୃତ୍ତିର ଅନୁରୂପ ବ୍ୟବହାର ପ୍ରଭୃତି ସମ୍ବନ୍ଧେ ଚୌପଦୀ ଶ୍ରେଣୀର ସଙ୍ଗୀତରେ ଯାହା ଅଛି ବୈଦେହୀଶବିଳାସ, ଲବଙ୍ଗଲତା, ଚନ୍ଦ୍ରା-ମଣି ମହାଭାରତ ରାମାୟଣ ପ୍ରଭୃତିରେ ତାହା ମିଳିବାର ନୁହେଁ । ଏଥି ହେତୁରୁ ଚୌପଦୀ ଶ୍ରେଣୀର ସଙ୍ଗୀତ ଯେ ପ୍ରକୃତ ଜାତୀୟ ସଙ୍ଗୀତ ବାଚ୍ୟ ଏଥିରେ ସନ୍ଦେହ ନାହିଁ ।

ଓଡ଼ିଆରେ ଯେ ଚୌପଦୀ ନାହିଁ ବୋଲି ତାହାର ସୃଷ୍ଟିପାଇ-ବାମ୍ବା ଏ ଶ୍ରେଣୀ ସଙ୍ଗୀତର ଉତ୍କର୍ଷ ସାଧନ ପାଇଁ ଏ ସବୁ ଲେଖା ଗଲା ତାହା ନୁହେ, ଓଡ଼ିଆ ଚୌପଦୀ ସାଧାରଣ ବିଷୟମାନଙ୍କର ବହି-ର୍ଭୂତ ନୁହେ, ତାହାର ଉନ୍ନତି କିମ୍ବା ଅବନତି ଲୋକ ବିଶେଷର ଅଧୀନ ନୁହେଁ; ବୈଦେହୀଶବିଳାସ ଲାବଣ୍ୟବତୀ ମହାଯାତ୍ରା ଆଉ ରଚିତ ହୋଇ ନ ପାରେ, କିନ୍ତୁ ନୂଆ ନୂଆ ଚୌପଦୀ ଯେ ଆଉ ଶୁଣା ନ ଯିବ ଏହା ସମ୍ଭବପର ନୁହେ । ଏ ଶ୍ରେଣୀ କବିତା ସ୍ୱାଭାବିକ କାରଣରୁ ଉତ୍ପନ୍ନ ଆଉ ସାମୟିକ ପ୍ରବୃତ୍ତି ଅନୁସାରେ ରଚିତ ହେବା ହେତୁ ପ୍ରଚଳିତ ଓଡ଼ିଆ ଚୌପଦୀମାନଙ୍କର ଦୋଷଗୁଣ ବାଛିବା ପୂର୍ବେ ଉପରୋକ୍ତ ସାଧାରଣ ବିଷୟମାନଙ୍କର ଆଲୋଚନା ଅବଶ୍ୟକ ବୋଧ ହେବାରୁ ଏହା ସବୁ ଉଲ୍ଲେଖ କରାଗଲା । ଏହା ବୋଲି ଯେ ଅମ୍ଭେ ଚୌପଦୀ ସମାଲୋଚନା କରିବାକୁ ଯାଉଅଛୁଁ ତାହା ନୁହେ; ଉକ୍ତ ଚତୁରତର କାର୍ଯ୍ୟ ମାଦୃଶ ଜନ ପକ୍ଷେ ସମ୍ଭବପର ନୁହେଁ, ଏହା କରିବାକୁ ପ୍ରୟାସୀ ହେବା ଯେ ବାମନ ହୋଇ ଚନ୍ଦ୍ରକୁ ହାତ ବଢ଼ାଇବା ସେ । ଅମ୍ଭେ ସମାଲୋଚନା କରିବାକୁ ଅଭିଳାଷୀ ନୋହୁଁ, ସାହିତ୍ୟ ସଙ୍ଗୀତାନୁରାଗୀ ବନ୍ଧୁମଣ୍ଡଳୀଙ୍କର ସମାଲୋଚନା ପାଇଁ ଗୋଟିକେତେ ଚୌପଦୀ ଏକତ୍ର କରିବା ଅମ୍ଭର ଉଦ୍ଦେଶ୍ୟ, କୁଳାଚାର୍ଯ୍ୟ ବା ବିଚାରକ ପଦରେ ବସିବା ଅଭିଳାଷୀ ନୋହୁଁ, ବଣିକ

ହାତକୁ ମାଣିକ୍ୟ ଯୋଗାଇବା ନିହନ୍ତ ଅଗିରର ପ୍ରାର୍ଥୀ; କାରଣ ଚୌପଦୀ ସଙ୍ଗୀତର ସମାଲୋଚନା କରିବା ବର୍ତ୍ତମାନ ଅବଶ୍ୟକ ବୋଲି ଜଣା ଯାଏ । ପୂର୍ବେ ଲେଖାଯାଇ ଅଛି ଯେ ଏ ଶ୍ରେଣୀ କବିତା ଜାତୀୟ ସଙ୍ଗୀତ ଅଙ୍ଗର ବ୍ୟବହାର ପ୍ରବୃତ୍ତିର ମାଦଳାପାଞ୍ଜି, ଏହା ଛଡ଼ା ଏ ସବୁ ହୀରା ନୀଳା ମୋତି ମାଣିକ୍ୟର ମାଳା ନ ଥାଇ ଅଚିରସ୍ଥାୟୀ ହେଲେ ସୁଦ୍ଧା ଏଥିରେ କ୍ଷଣକେ ମଉଳ ଯିବା ଭଳି ଜବା ଶେଫାଳିକା ଟଗର ବକୁଳ ଦୁଇ ଦିନ ରହିଲା ଭଳି କଥା କେତେକ ଅଛି, ଶୁଖି ଗଲେ ସୁଦ୍ଧା ବାସ୍ନା ଦେଲା ଭଳି ମାଳତୀ ନାଅଳୀ ବଉଳ ମଧ୍ୟ ଅଛି । ସୁତରାଂ ଏ ସବୁ ଏକାବେଳକେ ନିତାନ୍ତ ଅପଦାର୍ଥ ନୁହେଁ, ଅଷି ଜାନ ବୁଜି ସମୟସ୍ରୋତରେ ଭସାଇ ଦେବା ଭଳି ନୁହେ । ଉହିଇ ଦେବା ପୂର୍ବେ ଥରେ ଆଖି ପକାଇବା ଉଚିତ ଓ ଅବଶ୍ୟକ ବୋଧ ହେଉଅଛି ।

ଚୌପଦୀ ଛପା ହୋଇ ବିକ୍ରୀ ହେଉଅଛି; ତାହା ବିଶାଦର ହେଲା ପରି ଜଣାଯାଏ ନାହିଁ, ଏପରି ସ୍ଥଳେ ସେ ସମ୍ବନ୍ଧେ ଅଉ କିଛି କହିବା ବା କରିବା ଆବଶ୍ୟକ କି ନା ବୋଲି ପ୍ରଶ୍ନ ହୋଇ ପାରେ । ଏହି ପ୍ରସଙ୍ଗର ମୀମାଂସା ପାଇଁ ଛପା ହୋଇଥିବା. ଚୌପଦୀମାନଙ୍କ ମଧ୍ୟରୁ କେତେକ ଏପରି ଚମ୍ପୂ ବା ଗୀତି ନାଟକ ଭିତରେ ସଙ୍କଳିତ ହୋଇ ମୁଦ୍ରାଙ୍କନ କରି ଗଲା । ବୋଧ ହୁଏ ଅନ୍ୟ ପରି ଅନେକେ ଏପରି ସଙ୍କଳନର ଅଭାବ ନ୍ୟୂନାଧିକ ଅନୁଭବ କରି ଆସୁଥିବେ । କାରଣ ପ୍ରାୟ ସବୁ ଗୀତ ରାଧା କୃଷ୍ଣ ବା ତାଙ୍କ ସଖାସଖୀଙ୍କ ଉକ୍ତି ପ୍ରତ୍ୟୁକ୍ତି ସ୍ୱରରେ ରଚିତ; କବିସୂର୍ଯ୍ୟ ବୃନ୍ଦାଙ୍କ କିଶୋରାନନ୍ଦ ଚମ୍ପୂ ଥାଟିରେ ଲିଖିତ, ତାଙ୍କର ଅନ୍ୟ ଗୀତ ଓ ବନମାଳୀ, ରାମକୃଷ୍ଣ, ରାମଚନ୍ଦ୍ର, ଗୋପାଳକୃଷ୍ଣ ପ୍ରଭୃତିଙ୍କ ଚୌପଦୀ ତଦ୍ରୂପ ଚମ୍ପୂ ବା ଗୀତି ନାଟକମାନଙ୍କର ଅଂଶ ବୋଲି ସ୍ପଷ୍ଟ ଜଣା ଯାଏ, ବନମାଳୀଙ୍କର "ନବନାଗର କହ୍ନା ମୂରଲୀ ବଜାଏ" ଦୋଷାର ଚୌପଦୀଟି

ଢଃସ୍ୱଦେବେ ତାଙ୍କ "ସହି କୃଷ୍ଣ ବନେ ବଂଶୀ କେ ବଜାଏ" ଘୋଷା ଗୀତର ଉତ୍ତର, ସେହିପରି "କୃଷ୍ଣେ ମୁରଲୀ ବାଜୁଛି" ଘୋଷାର ଗୀତ ଯେଉଁ ପ୍ରବୃତ୍ତି ପ୍ରକାଶ କରୁଛି ତାହାର ନିବୃତ୍ତି ପାଇଁ "ଯମୁନା ଯିବା ନୋହିଲା" ଘୋଷାର ଗୀତ ରଚିତ ହୋଇ ସ୍ପଷ୍ଟ ଜଣା ଯାଏ; ଈଦୃଶ ଅତି ସୁଲଭ ଉଦାହରଣର ସଂଖ୍ୟା ବଢ଼ାଇବା ଆବଶ୍ୟକ ବୋଧ ହେଉ ନାହିଁ । ଏହୁପରି ଗୀତମାନଙ୍କରୁ ସ୍ପଷ୍ଟ ଦେଖା ଯାଉ ଅଛି ଯେ ଚୌପଦୀକାରମାନେ ଯେଉଁ ମନୋହର ହୃଦସ୍ପର୍ଶିଣୀ ମାଳା ବା ସ୍ତବକମାନ ରଚିଥିଲେ ତାହା ଛିନ୍ନଭିନ୍ନ ହୋଇଯାଇ ତହିଁର ସୁସମ୍ବନ୍ଧ ବିକୀର୍ଣ୍ଣ ହୋଇ ପଡ଼ିଅଛି; ପ୍ରତି ପଦ୍ୟ କେବଳ ଦୋଷଗୁଣ ପ୍ରକାଶ କରୁଛି କିନ୍ତୁ ତାର ଅନ୍ୟ ସହିତ ସମ୍ବନ୍ଧରେ ଯେ ଦୋଷଗୁଣ ତାହା ଜଣା ପଡ଼ୁ ନାହିଁ; ମାଳତୀ ମାଳର ମଝିରେ ୨ ଥିବା ମରୁଆ, ଚମ୍ପା କୁନ୍ଦ ନିଚୋଡ଼ର ଯେ ଶୋଭା ତାହା ପ୍ରକାଶ ପାଉ ନାହିଁ । କେବଳ ଏତିକି ନୁହେଁ; ଉପଭୋଗଜନକ ଚମ୍ପୂ ନ ଜାଣିଥିବା ଲୋକଙ୍କୁ ତହିଁର ଗୋଟି ଗୋଟିଏ ଗୀତ ଶୁଣି ଶ୍ରୋତାର ଧ୍ୟାନ ପଡ଼େ; କାନରେ ସୁଧା ବରଷେ କିନ୍ତୁ ହୃଦୟ ସ୍ପର୍ଶ କରେ ନାହିଁ କିମ୍ବା ମାନସ ପଟରେ ଚିତ୍ରାଙ୍କନ କରେ ନାହିଁ । ଏହି ହେତୁରୁ ଚୌପଦୀ ସବୁର ଚମ୍ପୂ ଧାଡ଼ିରେ ସଙ୍କଳନ ଆବଶ୍ୟକ । ଏପରି ସଂକଳନର ଅନ୍ୟତର କାରଣ ମଧ୍ୟ ଅଛି ।

ଏକ ୨ ଚୌପଦୀକାରଙ୍କ ଗୀତ ଏପରି ଭାବରେ ସଙ୍କଳନ କରିବାକୁ ଗଲେ ଅନେକ ଗୀତର ଅଭାବ ଦେଖାଯାଏ; କେତେକ ଭାବ ଓ ବିଷୟର ସ୍ଥାନ ପୂରଣ ହୋଇ ପାରେ ନାହିଁ । ଅଥଚ ସୁଖର ବିଷୟ ଏହି ଯେ ଜଣକର ଅଭାବ ଅନ୍ୟ ଦ୍ୱାରା ପୂରଣ ହେଉଅଛି । ଏଥିରୁ ସ୍ପଷ୍ଟ ଦେଖା ଯାଉଅଛି ଯେ ଭିନ୍ନ ୨ ଚମ୍ପୂର ଯେଉଁ ୨ ଗୀତମାନ ଲୋକଙ୍କ ମନକୁ ଆସିଛି ସେହି ସବୁ ବଞ୍ଚି ହୋଇ ରହି ଯାଇଅଛି; ଅନ୍ୟ ସ୍ୱତନ୍ତ୍ରଭାବରେ ଅଛି ବା ଲୋପ ହୋଇଅଛି;

ତାହା କେବେ ମିଳିବ କି ନା ବୋଲା ଯାଇ ନ ପାରେ । ତାହା ଅନ୍ତରରେ କବି ବିଶେଷ ବା ଗ୍ରନ୍ଥବିଶେଷର ଯଥାର୍ଥ ସମାଲୋଚନା ପକ୍ଷେ କିଛି ଅସୁବିଧା ହୋଇପାରେ; କିନ୍ତୁ ତାହା ହେଲାପରି ଜଣା ଯାଉ ନାହିଁ ; କାରଣ ଇତସ୍ତତଃ ଚୌପଦୀର ଅଭାବ ନାହିଁ । କବି ବା ଗ୍ରନ୍ଥ ବିଶେଷର ସମାଲୋଚନା ବିଷୟରେ ଯାହାହେଉ, ଜାତୀୟ ସ୍ବତନ୍ତ୍ର ଅନ୍ତର ବ୍ୟବହାର ରୀତି ନୀତିର ସମାଲୋଚନା ପାଇଁ ଯେ ନଷ୍ଟ ହୋଇ ରହିଥିବା ଗୀତମାନ ଉତ୍କୃଷ୍ଟ ଉପକରଣ ଏହା କହିବା ବାହୁଲ୍ୟ ମାତ୍ର ; କାରଣ ଏ ସବୁ ଭିନ୍ନ ସମୟ ଓ ଭିନ୍ନ ସ୍ଥାନର କବିଙ୍କ ରଚିତ, ଭିନ୍ନ ସ୍ଥାନ ଓ ଭିନ୍ନ କାଳର ଭିନ୍ନ ଶ୍ରେଣୀର ଲୋକେ ଏହାକୁ ଗାନ କରି ଶିଖିଛନ୍ତି, ଏଣୁକରି ଏ ସବୁ ଏହା କବି ବା ତାଙ୍କ ଦେଶ କାଳର ରୀତି ନୀତି ସ୍ବତନ୍ତ୍ରର ପରିଚାୟକ ନ ହୋଇ ବହୁ ଦେଶ କାଳର ଲୋକଙ୍କ ବ୍ୟବହୃତ ପ୍ରକୃତି ପ୍ରକାଶ କରୁଅଛି । ପୁଣି ଏହିପରି ଶୁଣା କଥା ଯାଉଥିବାରୁ ନଷ୍ଟ ହୋଇ ରହିଥିବା ଚୌପଦୀମାନ ସହଜରେ ମଉଳିବାର ବା କଳଙ୍କୀ ଧରିବାର କଥା । ଏହା ସବୁ ଆଲୋଚନା କଲେ ମଧ୍ୟ ପ୍ରଚଳିତ ଚୌପଦୀମାନଙ୍କୁ ଗ୍ରନ୍ଥାକାରରେ ସଂକଳନ କରିବା ଆବଶ୍ୟକ ବୋଧ ହୁଏ ।

ଆମ୍ଭେ ଏପରି ସଙ୍କଳନ ଆବଶ୍ୟକ ବୋଲି ଅନୁଭବ କରୁଅଛୁଁ, କିନ୍ତୁ ଆମ୍ଭର ଏହି ସଙ୍କଳନ ଦ୍ୱାରା ପୂର୍ବୋକ୍ତ ଉଦ୍ଦେଶ୍ୟ ଯେ କେତେ ଦୂର ସାଧିତ ହେଲା ଏବଂ ଏହା ସଫଳ ହେଲା ତାହା ପାଠକେ ବିଚାର କରିବେ । ମାତ୍ର, ଅକ୍ଷର ଶବ୍ଦ ବା ପଦ ପରିବର୍ତ୍ତନ କରି ଏହାକୁ ଉଦ୍ଦେଶ୍ୟ ସାଧନୋପଯୋଗୀ କରିବାକୁ ଯଥାସାଧ୍ୟ ଚେଷ୍ଟା କରାଯାଇ ଅଛି । ତଥାପି ଏହା ବିଶେଷ କରି ମନେ ରଖିବା ପାଇଁ ଅନୁରୋଧ ଯେ ଏ ମାଳ ମାଳୀର ହାତ ଗୁନ୍ଥାମାଳ ନୁହେଁ; ଛିଣ୍ଡା ମାଳର ଖସି ହୋଇ ପଡ଼ିଥିବା ଫୁଲ ନେଇ ଏ ମାଳ ହେଲା, ଏଥିର ଫୁଲ ସବୁ ଯଥାସ୍ଥାନରେ

ସନ୍ନିବେଶିତ ହେବା ନୋହିବା ପାଇଁ କବି ଦାୟୀ ନୁହନ୍ତି, ଏଥି ପାଇଁ ଏକା ସଙ୍କଳନକାରୀ ସମ୍ପୂର୍ଣ୍ଣ ଦାୟୀ । ଏହା ଯେଉଁ କବି ବିଶେଷ ଜନ୍ମ କାଳୀୟ ସ୍ଥାନ ଗୁଣ ପ୍ରଭୃତି ସମାଲୋଚନା ଚଳା ନଚଳେ ଏ ବିଷୟଟି ବିଶେଷ କରି ମନେ ରଖିବା ଯେ ଆବଶ୍ୟକ ଏହା କହିବା ବାହୁଲ୍ୟମାତ୍ର

ଉପରେ ବୋଲା ଯାଇଅଛି ଯେ ଓଡ଼ିଆ ଚୌପଦୀ ମାତ୍ରକେ ରାଧାକୃଷ୍ଣଙ୍କ ପ୍ରୀତିବିଷୟାତ୍ମକ ଏବଂ ସେହି ସବୁ ଚୌପଦୀ ଚମ୍ପୂ ବା ଗୀତି ତାହାଙ୍କ ରୂପେ ସଙ୍କଳିତ କରା ହେଲା । ସ୍ୱଧର୍ମ ଅନୁସାରେ ଏ ସବୁ ଗୀତ ସମ୍ବନ୍ଧେ ବର୍ତ୍ତମାନ ସମାଜର ଓ ମହାତ୍ମାଙ୍କର ଉପସ୍ଥିତ ହୋଇଅଛି ସୁତରାଂ ଏପରି ସଙ୍କଳନ ପ୍ରକାଶ କରିବା ଉଚିତ କି ନା ବୋଲି ପ୍ରଶ୍ନ ହେବା ନିତାନ୍ତ ସମ୍ଭବପର । ଏ ପ୍ରଶ୍ନ ସମ୍ବନ୍ଧେ ଯାହା ବକ୍ତବ୍ୟ ତାହା ଏଠାରେ ଉଲ୍ଲେଖ ଉଚିତ ଓ ଆବଶ୍ୟକ ବୋଧ ହେଉଅଛି ।

ପ୍ରେମ ବା ପ୍ରୀତି ବିଷୟକ କବିତା ସବୁ ଦେଶରେ ସବୁକାଳରେ ସର୍ବଜନ ପ୍ରିୟ; ଏହା ସ୍ୱତଃସିଦ୍ଧ ବୋଲି କହିବା ବାହୁଲ୍ୟ ମାତ୍ର; କାରଣ, ଲୋକ ଗୋଟିକେ ପ୍ରକୃତି ଗୋଟିଏ, ଭିନ୍ନଃ ରୁଚିଃ ଲୋକଃ ପ୍ରଭୃତି ସ୍ୱତଃସିଦ୍ଧ ବଚନମାନ ଥାଉ୨ ଜଣା ଶୁଣା ଥିଲେହେଁ ତାନ୍ତ୍ରିକ, ମାନ୍ତ୍ରିକ, ତାର୍କିକ, ଦାର୍ଶନିକ, ବୈଜ୍ଞାନିକ ବା ପୌରାଣିକ ସମସ୍ତେ ପ୍ରେମର ବଶବର୍ତ୍ତୀ, ପ୍ରେମଭାବ, ସର୍ବ୍ବର ଅଧୀଶ୍ୱର; ପ୍ରେମ ହୃଦୟର ଠାକୁରାଣୀ; ଯେଉଁଠାରେ ପ୍ରେମର ଅଧିକାର ସେଠାରୁ ଲୁପ୍ତବୃତ୍ତି ଦୂରରେ ରହେ, ଯାହାଠାରେ ପ୍ରେମରେ ଅନ୍ଧ ତାହାର ଅନିଷ୍ଟ ବା ଅମଙ୍ଗଳ କରିବାକୁ ଦୁର୍ବୃତ୍ତି ନରାଧମ ସୁଦ୍ଧା ସ୍ୱପ୍ନରେ ମନେ କରେ ନାହିଁ; ବରଞ୍ଚ ପ୍ରେମବନ୍ଧନ ଅନ୍ତର ହେଲେ ପଲକେ ଜଗତ୍ ଉଚ୍ଛୃଙ୍ଖଳ; ସ୍ଥାବର ଜଙ୍ଗମ ସବୁ ଧୂମକେତୁ ପରି ବରଞ୍ଚ ଚଳିବେ ଉଚ୍ଛନ୍ନ ମାର୍ଗରେ ପ୍ରଧାବିତ, କାରଣ ପ୍ରେମ ଈଶ୍ୱରୀୟ ଗୁଣ ଅତଏବ ଈଶ୍ୱର ପ୍ରେମମୟ ବୋଲି ସର୍ବବାଦୀ ସମ୍ମତ । ସମସ୍ତେ ପ୍ରୀତି

ପ୍ରେମସ୍ଥଳାଭିଷିକ୍ତ ହେବା ଦେଖାଯାଏ, ଦୁହେଁ ଏକ ନ ହେଲେହେଁ ଏକ ଅନ୍ୟର ନାମାନ୍ତର ମାତ୍ର ନ ହେଲେହେଁ, ପ୍ରୀତି ଯେ ପ୍ରେମର ରୂପାନ୍ତର ବା ଅଂଶାବତାର ଏହା କେହି ଅସ୍ୱୀକାର କରିବେ ନାହିଁ ଏହି ହେତୁରୁ ପ୍ରୀତି ବିଷୟାତ୍ମକ ସଙ୍ଗୀତ ପଦରୁ, ମନୋହାରୀ ଓ ଚିତ୍ତବିନୋଦନକାରୀ ବୋଲି ଗଣା ହୋଇ ଆସୁଥିବାର ଜଣାଯାଏ ଏହା ବ୍ୟତୀତ, କାବ୍ୟ ମହାକାବ୍ୟ ପ୍ରଭୃତି ସ୍ଥଳେ ବର୍ତ୍ତମାନ ଯେଉଁ ନବନ୍ୟାସ ଉପନ୍ୟାସ ପ୍ରଭୃତିର ସ୍ରୋତ ପ୍ରବାହିତ ହେଉଅଛି ତହିଁରେ ସବୁ ଏହି ପ୍ରୀତି ପ୍ରେମ ପ୍ରଥବାର ଏକାଦଶୀ, ଦଧବାର ଶୁଭଙ୍ଖାତ, ଶ୍ୟାମବାବୁଙ୍କ ଅଥବା କନ୍ୟା ସହିତ ରାମବାବୁଙ୍କର ନିରୁଦ୍ଦେଶ, ହରିର କାରାବାସ, ମଧୁର ପ୍ରାଣ ନାଶ, ନାନାଦି ମନ୍ତ୍ରଣା ଯନ୍ତ୍ରଣା ଅଘଟଣ ଘଟଣାର ସୃଷ୍ଟି । ଏଥିରୁ ସ୍ପଷ୍ଟ ଦେଖାଯାଏ ପ୍ରୀତିର ଆଧିପତ୍ୟ ଯେପରି ଥିଲା ସେହିପରି ରହିଛି ଓ ରହିବ, ଯୁଗଧର୍ମ ଅନୁସାରେ ଯେ ଧାରାନ୍ତର ଉପସ୍ଥିତ ହୋଇଥିବାର ପୂର୍ବେ ଉଲ୍ଲେଖ ହେଲା ତାହା ପ୍ରୀତି ପ୍ରେମ ନୁହେଁ ରାଧାକୃଷ୍ଣଙ୍କ ପ୍ରେମ, ଉପସ୍ଥିତ ପରି ଜଣାପାଏ ବୋଧ ହୁଏ ଆଲୋଚିତ ଗୀତମାନ ରାଧାକୃଷ୍ଣଙ୍କ ପ୍ରେମ କୌତୁକ ବିଷୟକ ନ ହୋଇ ଗଜପତି ଇନ୍ଦୁମତି ବା ରାମଚନ୍ଦ୍ର ଦାସ ସରୋଜିନୀ ଦ୍ରୌପଦୀଙ୍କ ପ୍ରେମ କୌତୁକ ବିଷୟକ ହୋଇଥିଲେ ଆଧୁନିକ ନବନ୍ୟାସ ଉପନ୍ୟାସ ପରି ଗ୍ରହଣ ହେଉଥାନ୍ତା ।

ବଜ୍ରହ ଘାତ, ରକ୍ତପାତ, ଅଘଟଣ ଘଟଣ ଚକ୍ର ଦେଖାଇ ଆଧୁନିକ ନବନ୍ୟାସ ଉପନ୍ୟାସ ପ୍ରଭୃତି ସମାଦୃତ ହେଉଥିବା ସ୍ଥଳେ ଏ ସବୁ ନ ଥିଲେହେଁ ରାଧାକୃଷ୍ଣଙ୍କ ପ୍ରୀତି କଉତୁକ ସମ୍ବନ୍ଧେ ଧାରାନ୍ତର ଉପସ୍ଥିତ ହେବା ଓ ସେ ଦୁହେଁ ଆଧୁନିକ ନବନ୍ୟାସ ଓ ଉପନ୍ୟାସ ପ୍ରଭୃତିର ରାମବାବୁ, ସୂର୍ଯ୍ୟମୁଖୀ ପ୍ରଭୃତି ନାୟକ ନାୟିକାଙ୍କ ପରି ଗଣା ନ ହେବାର କାରଣ ବୁଝା ଯାଉ ନାହିଁ । ତାଙ୍କ ପ୍ରୀତି କଉତୁକର ରହସ୍ୟ ଗୂଢ଼ ଓ ଅପ୍ରକାଶ ଥିବାରୁ ସେ ସମ୍ବନ୍ଧେ ଏପରି

ଘଟିଥିବାର ଅନୁମାନ ହୁଏ ଯେଉଁ ଶ୍ରୀକୃଷ୍ଣଙ୍କ ମୁଖରୁ ଜଗତ୍‌ବିଖ୍ୟାତ ଭଗବଦ୍‌ଗୀତା ନିଃସୃତ ସେ ଯେ ବାଲ୍ୟକାଳରେ ଏପରି ଲୀଳା କାହିଁକି କରିଥିଲେ, ପ୍ରୀତିପାଶରେ ଜଡାଇ ବୃଷଭାନୁ ଝିଅମାନେ ଦେଇଛନ୍ତି କାହିଁକି ଛନ୍ଦଶାସ୍ତ୍ର ପଢ଼ାଇଲେ, ପୁଣି ଦ୍ୱାରିକାର ରାଜା ହେଲେହେଁ ଯୁବା କାଳରେ ଏପରି ଲୀଳା କଉତୁକ କାହିଁକି ଦେଖା ବା ଶୁଣା ନ ଗଲା କେହି କହିଥିବାର ବା ବୁଝାଇ ଥିବାର ଜଣା ନାହିଁ । ଏ ରହସ୍ୟ କେବେ ପ୍ରକାଶ ହୋଇଅଛି ବା ହେବ କି ନାହିଁ ବୋଲାଯାଇ ନ ପାରେ । ସେ ଯାହା ହେଉ ଲକ୍ଷ ୨ ଯୋଗୀ ଭୋଗୀ ରୋଗୀ ଘୋର ବଇରାଗୀ ପଣ୍ଡିତ ମୂର୍ଖ ଶତ ୨ ବର୍ଷ ହେଲା ରାଧାକୃଷ୍ଣଙ୍କ ପ୍ରେମକୁ ବିଶୁଦ୍ଧ ପବିତ୍ର ପ୍ରେମ ଓ ମୋକ୍ଷପଥ ବୋଲି ଜ୍ଞାନ ଓ ବିଶ୍ୱାସ କରିଆସୁଅଛନ୍ତି । କାବ୍ୟ, ନାଟକ, ପୁରାଣ ଓ ଶାସ୍ତ୍ରରେ ତାଙ୍କ ପ୍ରେମ କଉତୁକର ବିବୃତି ଅଛି, ଲୀଳାଭୂମି ବୃନ୍ଦାବନ ବିଦ୍ୟମାନ ଅଛି, କିନ୍ତୁ ଯୀଶୁଖ୍ରୀଷ୍ଟଙ୍କ ସମ୍ବନ୍ଧେ ଏ ସବୁ କିଛି ନାହିଁ । ଅଥଚ ତାଙ୍କ ଧର୍ମାବଲମ୍ବୀମାନଙ୍କ ମଧ୍ୟରୁ ଏକ ସମ୍ପ୍ରଦାୟ ଏପରି ପ୍ରେମକୁ ମୋକ୍ଷପଥ ବୋଲି ଜ୍ଞାନ ଓ ବିଶ୍ୱାସ କରୁଥିଲେ ଓ ଅଦ୍ୟାପି କରୁଅଛନ୍ତି । ଏଥିରୁ ସ୍ପଷ୍ଟ ଦେଖାଯାଏ ଯେ ଏହା ଭାରତବାସିଙ୍କ ମନ ପ୍ରାଣ ଏପରି ପ୍ରେମ ପାଇଁ ଲାଳାୟିତ ନୁହେଁ । ଏ ସମ୍ବନ୍ଧେ ଆମ୍ଭମାନଙ୍କର ସୁପରିଚିତ ପଣ୍ଡିତ ଜି ଅଲସନ ସାହେବଙ୍କ ଉକ୍ତି ବିଶେଷ କରି ମନେ ରଖିବା ଉଚିତ, ହିନ୍ଦୁଧର୍ମ ସମ୍ବନ୍ଧେ ଇଂଲଣ୍ଡରେ ଦେଇଥିବା ତାଙ୍କ ପଞ୍ଚମ ବକ୍ତୃତାରେ ଏହି ପ୍ରେମ ସମ୍ବନ୍ଧେ ସେ କହିଅଛନ୍ତି ଯେ "It is a terreble view of the souls attetute to the infinite, but while we condemn it we must not forget that the same view has more than once found a transecnt home in Christianity ଅର୍ଥାତ ଅନନ୍ତ ସଙ୍ଗେ ଆତ୍ମାର ଏପରି ଭାବ କଳ୍ପନା ଭୟାନକ,

କିନ୍ତୁ ଏହାର କଥା କହୁଥାଉଁବେଳେ ମନେ ରଖିବା ଉଚିତ ଯେ ଖ୍ରୀଷ୍ଟୀୟ ଧର୍ମରେ ସୁଦ୍ଧା ଏପରି ଭାବ ଏକାଧିକବାର ଅତିରସ୍ଥାୟୀ ଆଶ୍ରୟ ପାଇଅଛି । ଶ୍ରୀ ଥରସନ ସାହେବଙ୍କ ମତର ସମାଲୋଚନା କରିବାର ଏ ସ୍ଥଳ ନୁହେଁ । ଯୁଗଧର୍ମାନୁସାରେ ରାଧାକୃଷ୍ଣଙ୍କ ପ୍ରେମ ମୋକ୍ଷପଥ ହେଉ ବା ନ ହେଉ, ଆଲୋଚ୍ୟ କବିମାନେ ଯେ ସେ ପ୍ରେମ ବା ପ୍ରୀତିକୁ ଚରମ ପବିତ୍ର ପଦାର୍ଥ ଓ ମୋକ୍ଷପଥ ଜ୍ଞାନ ଓ ବିଶ୍ୱାସରେ ଗୀତ କରିଯାଇଅଛନ୍ତି ତାହାର ପ୍ରମାଣ ସେମାନଙ୍କ ଗୀତରେ ସ୍ପଷ୍ଟାକ୍ଷରେ ଦେଖାଯାଏ, ତାହା ନୋହିଥିଲେ କବି ଦିନକର "ବ୍ରଜଗିରୁ ଖୋଲେ ଏ ଭବ ସୁଖ ତୁଚ୍ଛ ଜଣାଗଲା । ଯଦୁରାଇ "ପବିତ୍ରସ୍ଥଳେ ଗ୍ଲାନିଗାଢ଼ ପରମ ପଦବୀ ଦେଲା," "ଠାକୁର ଠାକୁରା- "ଶ୍ରୀଙ୍କ ପଦାମ୍ବୁଜ ଧ୍ୟାନରଙ୍କ, ନୟନ ଗଦ୍ଗଦ କରେ ରଙ୍ଗେ ରହନ୍ତ," "ଅଶେଷ ଜନାର୍ଦ୍ଦନ ଚରଣ ନୃପତିବର, କୃଷ୍ଣେ ଦର୍ଶନ କର ଦେବା ଏ "ରଞ୍ଜପାର, ଶୂନ୍ୟମୟ ଘନର ନୋହେ ଏ ଜୀବ ଚର । ମାଥୁ "ମୋହକୁ ପ୍ରେମ ପାଦ ଅର୍ପଣ କର ଦେଖ ପୂର୍ଣ୍ଣଚନ୍ଦ୍ର ଗୋପୀମାନେ "ଗୋ", "ବନମାଳ ଦାସ ଦେହ ନନ୍ଦସୁତ ମନମୋହେ, ରଙ୍ଗି ମୁଁ "ମନ୍ତ୍ରି ହେବ 'ଶ୍ରୀଚରଣେ ଗୋ' "ଯେ ମୋହନୀବେଶ ଧରି, "ମୋହିଲେ ଅମରପୁରୀ, ତାହାଙ୍କର ବେଶେ ଧ୍ୱଜୀ ହେଲେ "ଶଙ୍କର", "ଏମନ୍ତ ସ୍ୱଚ୍ଛଳ ନାରୀ, ଚକ୍ରେ ଧ୍ୟାନ କରି ହରି, ଯମଚନ୍ଦ୍ର ଦେଇ ବୋଲେ ହେଲେ ବାହାର" ପରି ପଦମାନ ଅତି-ରସପୂର୍ଣ୍ଣ ପରି ବୋଧ ହେଉଥିବା ଚୌପଦୀରେ ଯଥେଷ୍ଟ ଦେଖାଯାଉ ନ ଥାନ୍ତା ।

ରାଧା କୃଷ୍ଣଙ୍କୁ ପ୍ରକୃତି ପୁରୁଷ ବା ଜୀବ ପରମ ଜ୍ଞାନ ଓ ବିଶ୍ୱାସରେ ଚୌପଦୀ ରଚିତ ହୋଇଥିଲେ, "ଚୋରିଲେ ବନମାଳୀ ଶୁଣ 'ଠାକୁରାଣୀ, ଜଗତ ନ କର ବେଣୁପାଣିକୁ" ପରି ପଦ ତା ଭାବ ଅସଙ୍ଗତ ବୋଧ ହୁଏ । କିନ୍ତୁ ପ୍ରକୃତି ପୁରୁଷ ବା ଜୀବ ପରମ ଏକ-

ଦେଉନ୍ତୁ ବା ଦୂର ଦେଉନ୍ତୁ, ଉକ୍ତ ଶ୍ଳୋକରେ ସ୍ରଷ୍ଟା ପୁରୁଷ ବା ପରମ-ପ୍ରକୃତି ବା ଜୀବର ସଙ୍ଗ ଲୋଡ଼ିଲା ପରି ଜଣାଯାଏ ; ପ୍ରକୃତି ବା ଜୀବ ପରମ ବା ପୁରୁଷଙ୍କୁ ଅନ୍ୱେଷଣ କଲା ପରି ଜଣାଯାଏ ନାହିଁ ; ସ୍ୱୟଂ ପରମ ବା ପୁରୁଷ, ତଥା ତାଙ୍କର ଅଂଶାବତାର ବା ଅନୁଗ୍ରହର ପାତ୍ର ରାମ, କୃଷ୍ଣ, ଯୀଶୁ, ମହମ୍ମଦ ବା ବୁଦ୍ଧଦେବଙ୍କୁ ଲୋକେ ଖୋଜି ଆଣି ନାହାନ୍ତି, ଲୋକଙ୍କର ଗତିମୁକ୍ତି ପାଇଁ ସେମାନେ ଆପେ ଲୋକଙ୍କ ମଧ୍ୟକୁ ଆସିଅଛନ୍ତି । ଏଥିରୁ ଅନୁମାନ ହୁଏ ଯେ ପରମ ବା ପୁରୁଷ ଜୀବ ବା ପ୍ରକୃତିକି ଲୋଡ଼ୁଛନ୍ତି ; ପରମ ବା ପୁରୁଷଆଡ଼କୁ ନ ଯାଇ ଅନ୍ୟଦିଗାଭିମୁଖୀ ହେବା ଜୀବ ବା ପ୍ରକୃତିର ସ୍ୱଭାବ । ପରମ ବା ପୁରୁଷଙ୍କୁ ଜୀବ ବା ପ୍ରକୃତିର ଏପରି ସ୍ୱଭାବ କାହିଁକି ତାହା ସ୍ରଷ୍ଟା ଜାଣନ୍ତି ; ତାଙ୍କ ଲୀଳା ଅଗୋଚର । ସେ ଯାହାହେଉ ଏହିପରି ଆଲୋଚନା କଲେ ଆଲୋଚିତ ଗୀତ ପଦକ ଛନ୍ଦମାନ ଅସଙ୍ଗତ ଜଣାଯାଏ ନାହିଁ, ବରଂ ଏହାର ଅନ୍ୟାନ୍ୟ ଗୀତ ସହିତ ଏହାକୁ ଦେଖିଲେ ଆଲୋଚିତ ପଦ ଏହି ଭାବରେ ରଚିତ ହୋଇ-ଥିବାର ସ୍ପଷ୍ଟ ଦେଖାଯାଏ । ଯାହା ଅସଙ୍ଗତ ବା ଅସୁନ୍ଦର ବୋଧ ହେଉଛି ତାହା ପରିହାର କରିବା ପୂର୍ବେ ସବୁ ଦେଶ ଆଲୋଚନା କରିବା ଉଚିତ, ତାହାର କୌଣସି ମୀମାଂସା ସମ୍ଭବପର ହେଉ ନ ଗଲେ ତାହାର ପରିମାଣ ଅନ୍ୟର ପରିମାଣ ସହିତ ତୁଳନା କରିବା କର୍ତ୍ତବ୍ୟ ଏବଂ ଏହା ମନେ ରଖିବା ଉଚିତ ଯେ ମହାଗ୍ରନ୍ଥମାନଙ୍କରେ ମଧ୍ୟ ଏପରି କଥାମାନ ଅଛି ଯେ ତାହାର ଭାବ ବା ଉଦ୍ଦେଶ୍ୟ ପ୍ରକାଶ ପାଇ ନାହିଁ ତଥା ସେ ସମ୍ବନ୍ଧେ ନାନା ମୁନିଙ୍କର ନାନା ମତ, କାହାରି କାହାରି ଅର୍ଥ ବା ଉଦ୍ଦେଶ୍ୟ କ୍ରମଶଃ ପ୍ରକାଶ ପାଉଅଛି ଏବଂ ଅନ୍ୟାନ୍ୟ ଗ୍ରନ୍ଥମାନଙ୍କ ପରି ଯେ ଏ ସବୁ ଗୀତ ପ୍ରକ୍ଷିପ୍ତାଂଶ ନାହିଁ ଏହା କୁହାଯାଇ ନ ପାରେ ।

ଯଥା କୃଷ୍ଣଙ୍କ ପ୍ରେମକୁ କେବଳ ଜ୍ଞାନ ଓ କଥାରେ ତାହାର

ଅନୁକରଣ ବା କାର୍ଯ୍ୟ-ପରଣତିରେ ଲୋକଙ୍କୁ ପ୍ରବର୍ତ୍ତାଇବା ପାଇଁ ଏ ସବୁ ଗୀତ ହୋଇଅଛି ବୋଲି କେତେବେଳେ ତୋଲା ଯାଇ ନ ପାରେ, ବରଂ ତାହେଲେ କେହି ସେପରି କହେ ତାହା ନିବାରଣ ପାଇଁ ଏପରି ପ୍ରୀତି ଲୀଳା ଓ କୌତୁକ ଗାଥା କୃଷ୍ଣଙ୍କ ଭିନ୍ନ ଅନ୍ୟ ମାନଙ୍କ ପକ୍ଷେ ନିନ୍ଦ୍ୟ, ଗର୍ହିତ ଓ ଅବୈଧ ବୋଲି ଉପଦେଶ ଦେବା ପାଇଁ ଏ ସବୁ ଗୌପଦୀ ରଚିତ ହୋଇଥିବାର ସ୍ପଷ୍ଟ ଦେଖାଯାଏ; ତାହା ନୋହିଥିଲେ ଏକ ପକ୍ଷରେ ଯେପରି "ପରପ୍ରୀତି ସାର "କଲେ ସିନା ଜାଣ ହୁଏ ଗୋଚର," "ପ୍ରୀତିସୁଧା କେ ଜାଣିଛି "ଅନୁଭବୀ ବିନା ରେ" "ମଧୁ ଯେବେ ଅଛି ମଧୁପକୁ ତେବେ ଲୁଚିଛି "କମଳ ସମ ରେ" "ଯାର ମନ ଯହିଁର ରସେ ଭାରବନ୍ତୁ ଭାବୁ ଅନ "ନ ବିଶେ" ପ୍ରଭୃତି ପଦମାନ ଅଛି, ଅପର ପକ୍ଷରେ ସେହିପରି "ଜଗି "ଜଗି ପରପ୍ରୀତିକି ଜାଗି ଝୁରାଇ, ଇହ ପର ଦୁଇଲୋକେ ନିନ୍ଦିତ "କରାଇ "ପର ପୀରତିରେ କାହିଁକି ମଜେ କାମିନୀ, ହେଲେ "ସ୍ନେହଜାତ ନୂଆଇ ଗୁପତ, ପ୍ରକାଶ ହୁଏ ଅବନୀ", "ପୀରତି ପଥ "ସ୍ୱପନା ରେ ସଜନ, ନ ଜାଣି ଯହିଁକି ପଦ ବଢ଼ାଇଲେ ପଦ ପଦକେ "କଣ୍ଟକା" ପଦମାନ ନ ଥାନ୍ତା; ଏହିପରି ଉର୍ଦ୍ଧ୍ୱ ବର୍ଦ୍ଧକ ଭାବରେ ଯାହା ରଚିତ ହୋଇଛି ତାହା ତୁଳନା କଲେ ପ୍ରବର୍ତ୍ତକ ଅପେକ୍ଷା ନିବର୍ତ୍ତକ ବଚନ ଅଧିକ ଦେଖାଯାଏ । ପୁଣି ଏଥି ସଙ୍ଗେ ମାତ୍ର ମର୍ଯ୍ୟାଦା ସାମାଜିକ ରୀତି ନୀତିର ଅନୁଶ ମଧ୍ୟ ଯୋଗା ହୋଇଅଛି । ଏହା ଶ୍ରୀକୃଷ୍ଣଙ୍କ ରକ୍ଷିବତା ପ୍ରତି ରାଧାଙ୍କ ମୁଖରେ "ମୁହିଁ ବୃଷଭାନୁ, "ଜେମା, ଅନ୍ୟ ପ୍ରାସ୍ ମୋତେ ମଣି କ, ଧର ମୋ ଅଞ୍ଚଳ କରୁଛ "ଚଞ୍ଚଳ ଜର କାହିଁ ପର ବୁଝିସୁଣିକ," ଲଳିତାଙ୍କ ମୁଖରେ "ଜର କାହିଁ "ତ ଦେହ ପର ତରୁଣୀ ହରଣ, ତୋରଲାଗି ବୋର ପଡ଼ିବା ହେବଟ "ବୈର ପର ଆଚରଣ," ଦୂତୀଙ୍କ ମୁଖରେ "ପରଦାର ରତି ଏ ଅପକୀରତି ବାଦେ ଉସ୍ତା" ଏବଂ ସ୍ୱୟଂ ଶ୍ରୀକୃଷ୍ଣଙ୍କ ମୁଖରେ "ଯେ

"କରେ ପାପ ପୀରତି ସେହି ମୂଢ଼ ଜନ ରେ" ପ୍ରଭୃତି ବଚନମାନଙ୍କରୁ ସ୍ପଷ୍ଟ ଦେଖାଯାଏ । ରାଧାକୃଷ୍ଣଙ୍କୁ ପ୍ରକୃତି ପୁରୁଷ ଓ ତାଙ୍କ ପ୍ରେମକୁ ମୋକ୍ଷପଥ ଜ୍ଞାନ ଓ ଉପାସ୍ୟ କରିବା ସଙ୍ଗେ ସଙ୍ଗେ ସ୍ୱୟଂ ସେମାନଙ୍କ ଓ ସେମାନଙ୍କ ସଖୀସଖିଙ୍କ ମୁଖରେ ଏପରି ବଚନମାନ ଦେଇଥିବାରୁ କବିମାନେ ସ୍ପଷ୍ଟ ଏହି ଉପଦେଶ ଦେଉଅଛନ୍ତି ଯେ ରାଧାକୃଷ୍ଣଙ୍କୁ ସାଧାରଣ ନରନାରୀ ଜ୍ଞାନ କରି ତାଙ୍କ ପ୍ରେମକୁ ଅନୁଭବ କଲେ "କୁଳଛଡ଼ା ଘରବୁଡ଼ା" ହେବାକୁ ହେବ, 'ପଦପଦକେ କଚଡ଼ା' ଖାଇବାକୁ ହେବ; ସେହି ହେତୁରୁ ଯେଉଁ ଗୀତରେ ବନମାଳୀ କହିଛନ୍ତି "ବୋଲେ ବନମାଳୀ, ଶୁଣ ଠାକୁରାଣୀ, ନିରାଶ ନ କର "ବେଣୁପାଣି କୁ" ସେହି ଗୀତରେ କହିଛନ୍ତି "ଡର ନାହିଁ କି ପର-ଲୁଅସୁଣୀକୁ" । ଏହିପରି ଆଲୋଚନା କଲେ କବିମାନଙ୍କର ଉଦ୍ଦେଶ୍ୟ ପବିତ୍ର ବିଶୁଦ୍ଧ ଓ ମହତ୍ ବୋଲି ନିଃସନ୍ଦେହ ପ୍ରତୀୟମାନ ହୁଏ, ରାଧାକୃଷ୍ଣଙ୍କ ପ୍ରେମକୁ ମୋକ୍ଷପଥ ଜ୍ଞାନରେ ଜୀବ ପରମ ମଧ୍ୟରେ ସେହି ପ୍ରେମର ପରିପୋଷଣ ଓ ପରିସ୍ଫୁଟ କରିବା ଓ ନରନାରୀ ମଧ୍ୟରେ ସେପରି ଲୀଳା ଅନୁଭବ ନ କରିବାକୁ ଶିକ୍ଷା ଦେବା ଉଦ୍ଦେଶ୍ୟରେ ଏହି ସବୁ ଗୀତିପଦୀମାନ ରଚିତ ହୋଇ ଥିବା ବିଷୟରେ କୌଣସି ସନ୍ଦେହ ହୋଇ ନ ପାରେ । କେବଳ ଯେ ପ୍ରୀତି ବିଷୟରେ ଉପରୋକ୍ତ ପ୍ରକାର ବଚନ ଓ ଉପଦେଶମାନ ଅଛି ତାହା ନୁହେଁ, ତାହା ସଙ୍ଗେ ସଙ୍ଗେ ଅନ୍ୟ ବିଷ-ୟରେ ଉପଦେଶର ଅଭାବ ନାହିଁ; ଏହା "ପବନ ପାବକ ଜଳ, ନାଶନ୍ତି "ହେଲେ ପ୍ରବଳ, ବେଳ ଜାଣି ତହିଁ କେଉଁ ଜନ ନୁଅନ୍ତି ବମନାରେ," "ସିନ୍ଦୂର ଗର୍ବିତ, ଅଛନ୍ତି କୁମ୍ଭୀର ଆଦି ମହାମୀନଶ୍ରେଣୀ, ତହୁଁ ତ "କାଳ ଲଭନ୍ତି ପତନ କରି କେତେ ପୁଣି," "ବୋଲେ କବିରତ "ଏ ଭବ, ଯାହାର ଯେମନ୍ତ ସ୍ୱଭାବ, ପ୍ରାଣ ଗଲେ ହେଲେ ଛାଡ଼ି କି "ଯିବ," "ଅବଗୁଣ ଥିବ ଜାଣି, ଗଙ୍ଗାକୂଳେ ଅଛି ପଙ୍କ, ରତ୍ନାକରେ "କଳଙ୍କ ଲଭିଛି ରେ," "ଭୃତ୍ୟର ଦୋଷ ଦେଖି, କରଥାଇ ଯେବେ

"ସ୍ୱାମୀ, କାହିଁ ତା ଡାକିଲ ନେଖି ହାଣିବାରେ" "କ୍ଷନ ପୂର୍ଣ୍ଣ କାହ, "ମୃଦୁବାଣୀ କହ ବାହୁମୂଳୁ ଛାଇବା, କହାରେ ଗାପିତ ବନ "ଲତା ହୁଳ ବାହ ନେବା ଛଳ କରୀ" "ହୀନ ଗୌରବର, ତୋରେ "ଆଗେ ବୋଉ, ଦେଖିଲା କ ଦେଖି ନଗର, ପ୍ରିୟ ସ୍ୱବଚନ୍ଦ୍ର, ଠାଏଁର "ଏକୁପାନ କରିବା ଚୂପରି" "ସ୍ୱଙ୍ଗାଜ ମଙ୍ଗଳ ବାଧରେ ଚାଏଥା। "ଚିତ୍ତକର ମନ ମାତ୍ର ମୂନ କଲେ ମାତଯାଏ ପୁଣି କଥା" "ପଗ୍‌ବାନ୍ଧିଭ "ବ ଲୋଡା। ରେ ସ୍ୱଙ୍ଗାଭ। ଯିଏ କନ ପ୍ରୀତି ପୀୟୂଷ ପ୍ରବାହ ହୁଅଇ "ପେରେ ଶବ୍ଦଜା" ପ୍ରଭୃତି ପଦମାନଙ୍କରୁ ଦେଖାଯାଏ। ଏପରି ବଚନମାନ ଓ ପୂର୍ବ ପେତ ମାନ ଉଦ୍ଧୃତ କରାଯାଇ ଅଛି ସେ ସବୁ ଛଡା ଶେଷାଳିକା ପରି ଗଣା ଯିବ କି ମଣି ମାଣିକ୍ୟ ପରି ଗଣା ଯିବ ତାହା ପାଠକମାନେ ବିଚାର କରିବେ। କିନ୍ତୁ ଏ ସବୁରୁ ସ୍ପଷ୍ଟ ଦେଖାଯାଏ ଯେ କେବଳ ଅତିଭୁକରେ ବକ୍ରି ଭଙ୍ଗିବା ପାଇଁ, ଅଥବା କବାହ, ଅଥବା କବାହ ସମ୍ପାଦନା ପାଇଁ, କାଶ୍ମୀର ରାଜକନ୍ୟା ଲାଭ ଉପଲକ୍ଷେ ଅଯୋଧ୍ୟା ରାଜାଙ୍କର ବୀରତ୍ୱ ରଣକୌଶଳ ପ୍ରଭୃତି ଦେଖାଇବା ପାଇଁ ଏ ସବୁ ଗ୍ରନ୍ଥପଦୀ ରଚିତ ହୋଇ ନାହିଁ; ଏଥିରେ ତତ୍କାଳ ସ୍ତ୍ରୀମାନଙ୍କ ଉତ୍ପୀଡ଼ିତ ଉପ୍ଲବିତ କରାଇବା ବଳ କୌଶିକ ଯନ୍ତ୍ରଣା ବହ ନାହିଁ; ଏହା କେବଳ ଭାବସାଗରର କଲ୍ଲୋଳ ହିଲ୍ଲୋଳ ଲହରୀରେ ପୂର୍ଣ୍ଣ, ଦେଶ କାଳ ପାତ୍ର ଅନୁସାରେ ସାମାଜିକ ଗତିନୀତି ପ୍ରଭୃତି ବିଷୟ ସଙ୍ଗେ ପରମ ପଦରେ ରାଧା କୃଷ୍ଣଙ୍କ ଭାବ ଓ ଲୟ ରଖିବାକୁ ଉପଦେଶ ଦେବା ତାଙ୍କ ସମ୍ବନ୍ଧୀୟ ଗ୍ରନ୍ଥପଦୀମାନଙ୍କର ଉଦ୍ଦେଶ୍ୟ ବୋଲି ବୋଧ ହେଉଅଛି।

ରାଧା କୃଷ୍ଣଙ୍କୁ ପ୍ରକୃତି ପୁରୁଷ ଜ୍ଞାନରେ ତାଙ୍କୁ ପରମାରାଧ୍ୟ ଇଷ୍ଟଦେବ ବୋଲି ଗ୍ରହଣ କରାଇବାକୁ ଏବଂ ତାଙ୍କ ପ୍ରେମକୁ ମୋକ୍ଷପଥ ବୋଲି ଅବଲମ୍ବନ କରାଇବାକୁ ଯେ ଏ ସବୁ ଲେଖାଗଲା ତାହା କହିବି; ଏହା ଧର୍ମ ସମ୍ବନ୍ଧୀୟ କଥା, ଏ ସମ୍ବନ୍ଧେ ଯାହାର ଯେପରି ମନ, ଜ୍ଞାନ ଓ ବିଶ୍ୱାସ, ଓଡ଼ିଆ କବିଏ ସେହି ଭାବ ଓ ଉଦ୍ଦେଶ୍ୟରେ ତାଙ୍କ ପ୍ରେମ

'କଉତୁକ ସମ୍ବନ୍ଧୀୟ ଦ୍ରୌପଦୀ କର ଯାଉଛନ୍ତି କେବଳ ତାହା ସୂଚାଇ ଦିଆଗଲା; ଧର୍ମକଥା ଛାଡିଦେଇ ଯଥାଂ କୃଷ୍ଣଙ୍କୁ ଅଧ୍ୟାତ୍ମ ନବନ୍ୟାସ ଉପନ୍ୟାସର ସାଧାରଣ ନାୟକ ନାୟିକା କଳ୍ପନା କରି ଦ୍ରୌପଦୀ ସଂଗୀତରେ କି ଅଛି ତାହା ଦେଖିବା ପାଇଁ ତାହାର ଦୋଷ ଗୁଣ ବାଛିବା ପାଇଁ ଏ ବାଛିଧୁଲି ମାଳା ଟଣା ଗଲା। ଏଥିରେ ନୂଆ କିଛି ନାହିଁ, ଯଥାସ୍ଥାନରେ ସନ୍ନିବେଶିତ ଜୋଡ଼ିବାରୁ ମାତ୍ର ସୁନ୍ଦର ନ ଦିଶିଲା ଭଳି କୌଣସିଟି ଧୂଳିର ଦୋଷ ଦାଗ ହୋଇଥିଲେ ତହିଁ ପାଇଁ ଲେଖକ ଦୋଷୀ ନୁହନ୍ତି, ଏହା ଆମ୍ଭର ତ୍ରୁଟି ବା ଅଯୋଗ୍ୟପଣିଆ। ଏପରି ମାଳା ଗୁନ୍ଥିବା ଅନୁଚିତ ହେଲେ ଆଶା କରୁଁ ସହୃଦୟ ସୁଧୀ ଜନେ ଅନୁଗ୍ରହ କରି କ୍ଷମା କରିବେ।

ପରିଶେଷରେ ଯେଉଁମାନେ ଚୌପଦୀ ଗୀତ ସଂଗ୍ରହ କରି ମୁଦ୍ରାଙ୍କିତ କରି ଅଛନ୍ତି ସେମାନେ ଯେ ଧନ୍ୟବାଦ ଓ କୃତଜ୍ଞତାର ପାତ୍ର ଏହା କହିବା ବାହୁଲ୍ୟ ମାତ୍ର।

ଗୟା
ତା ୧୭ ତିଖ ନଭେମ୍ବର ୧୯୦୭ } ଶ୍ରୀ ଗୋପାଳବଲ୍ଲଭ ଦାସ।



"ଗଉର ଶ୍ୟାମଯଙ୍କ, ଦେବାରୁ ଏକସଙ୍ଗ" ପୃ ୮୬

"Composer, sculpter, painter, poet, proposer, sage, these are the makers of the afterworld, the archectets of heaven"—James Allen.

# ପ୍ରୀତି ସୁଧାକର ।

( ନେପଥ୍ୟେ )

ରାଗ—ସଙ୍କୀର୍ତ୍ତନ ସ୍ୱର ।

ସୁଖ କେ ପାଇବ ଜଗତେ କହ
ସୁଖ ପାଇବାର ଅଜ ଉତ୍ସବ
ସୁଖରେ ନାଚଇ ସୁଖ ହିଲ୍ଲୋଳ
ସୁଖରେ ଉଠଇ ସୁଖ କଲ୍ଲୋଳ
ସୁଖରେ ଜଗତ ଦୋଳେ
ଆଜି ପୂର୍ଣ୍ଣଚନ୍ଦ୍ର ଜିଣା କୃଷ୍ଣଚନ୍ଦ୍ର ( ବୃନ୍ଦାବନ ଲୀଳା କାଳେ*) । ୧ ।
ସୁଖେ ଋତୁରାଜ ମଳୟ ବିହ
ସୁଖ ଛାଡ଼ି ଅନ୍ୟ ଏଠି ବହଇ
ସୁଖରେ ନକ୍ଷତ୍ର ମଣ୍ଡିତ ଧରା
ସୁଖ ନୃତ୍ୟ ଗୀତେ ଅବନୀ ଭରା
ସୁଖର ତରଙ୍ଗ ଖେଳେ
ଆଜି ପୂର୍ଣ୍ଣଚନ୍ଦ୍ର ଜିଣା କୃଷ୍ଣଚନ୍ଦ୍ର (ବୃନ୍ଦାବନ ଲୀଳା କାଳେ*) । ୨ ।
ସୁଖେ କୁସୁମିତ ମାଧବୀ ଲତା
ସୁଖର କୁରଙ୍ଗ କୁରଙ୍ଗୀ ନୃତ୍ୟ
ସୁଖେ ମଧୁପିକ ପଞ୍ଚମ ଗୀତ
ସୁଖେ ଋତୁ ଚକ୍ର ଚନ୍ଦ୍ର ଉଦିତ
ପରାଣେ ପୀୟୂଷ ଢାଳେ
ଆଜି ପୂର୍ଣ୍ଣଚନ୍ଦ୍ର ଜିଣା କୃଷ୍ଣଚନ୍ଦ୍ର (ବୃନ୍ଦାବନ ଲୀଳା କାଳେ*) । ୩ ।

ସୁଖ ଅଛି ନିଜ ସୁଖେ ବହୁଳ
ସୁଖେ ଖେଳି ବୁଲେ ସବୁରୁ କୋଳ
ସୁଖେ ପୂର୍ଣ୍ଣ ଧରା ନଭୋମଣ୍ଡଳ
ସୁଖର ତାଣ୍ଡବ ସୁଖର ରୋଳ
ସୁଖରେ ଗୋପାଳ ବୋଲେ
ଆଜି ପୂର୍ଣ୍ଣଚନ୍ଦ୍ର ଜଣା କୃଷ୍ଣଚନ୍ଦ୍ର (ବୃନ୍ଦାବନ ଲୀଳା କାଳେ*) । ୪ ।

## ପ୍ରଥମାଙ୍କ ।

### ପ୍ରଥମ ଦୃଶ୍ୟ ।

ଗୋଷ୍ଠବାଣ୍ଡ ।

( ଶ୍ରୀମନ୍ତ, ଦୁଷ୍ମ, ଲଧଡ଼ା, ବଶାଖା ପ୍ରଭୃତି ଗୋପାଙ୍ଗନାଗଣ ।)

ରାଗ ପୂରବୀ—ଝୁଲା ।

ଦୁଷ୍ମ—

ଦେଖିବ ପରା ଆସ ଅସ ବାମନୟନା । ପଦ ।

ଶିରୁ ଶିରେ ଶୋଭେ ଚନ୍ଦ୍ରକାଚୂଳ, ନାନାରତନେ ଯତନେ କୁଣ୍ଡଳ, ଚନ୍ଦ୍ରମୁଖେ ଲୁଟେ ସୁ-ଇନ୍ଦ୍ରନୀଳମଣି ଛିତବରନା । ୧ ।

ଶିଶୁଫଣିମଣି କରେ ବ ନୃତ୍ୟ, ଶ୍ରୀକରେ ଶୋଭଇ ମୁରଲୀଗୀତ, ଦୁଃଖୀଜନମାନେ ସୁଖୀତ ହୋଇବେ, ମାନନୀ ମାନ ହେବ ଚୂନା । ୨ ମଦନମୋହନମୂରତି ଭାର, ଯାଦ ନ ଚଳଇ ଦେଖିଲେ ମୋର, ଶର କୋଟି କୋଟି କରେ ପ୍ରହାର ମାରଇ ଅପଘନ ହିନା । ୩ ।

---

* ହୋଇରେ ଏ ଗୀତ ବୋଲାଗଲେ (ବୃନ୍ଦାବନ ଲୀଳା କାଳେ) ନ ବୋଲି (ସ୍ୱୟଂଶ ଖେଳନ୍ତା କାଳେ) ବୋଲିବାକୁ ହେବ ।

ଝଲମଲ ପୀତପଟ୍ଟ ବସ୍ତେ, ଝୁମ୍ ଝୁମ୍ ଝୁମ୍ ନୂପୁର ବାଜେ, ଧୈର୍ଯ୍ୟ ତେଜି ଦେବ ଅଙ୍ଗ, ନୃତ୍ୟ ଗୀତେ ଦଉଡେଇଲେ । ୪ । ସୁରେ ଭାଗୀରଥୀ ଇଣା ଏ ସ୍ତୁତି, ଧରିତିରେ ଜଣାଇଲେ ଶ୍ରୀମତି, ବ୍ରହ୍ମା ରୁଦ୍ର ଇନ୍ଦ୍ର ଚନ୍ଦ୍ର, ଯା ପାଦେ କରନ୍ତି ବନ୍ଦନା । ୫ ।

---

ପୂରବୀ—ତାଳ ଝୁଲା ।

ଲଳିତା—

ଆସୁଛନ୍ତି ବ୍ରଜବାସୀ ଧୀରେ ଧୀରେ ଚଳି ଚଳି ଗୋ । ପଦ ।
ଦିନ ଶେଷ ସମୟରେ ରଙ୍ଗ ସୁରଭି ପଛରେ
ବଜାଉଛନ୍ତି ମୁରଲୀ ଧୀରେ ଧୀରେ ଚଳି ଚଳି ଗୋ । ୧ ।
ଇନ୍ଦ୍ରନୀଳମଣି ତନୁ ପଦ୍ମଦାସ ଜାତ ମନୁ
ଝୁଲାନ୍ତି ବରସ୍ଥିଆଳି ଧୀରେ ଧୀରେ ଚଳି ଚଳି ଗୋ । ୨ ।
ଦେଖିବା ସଜ୍ଜନ ଚଳ ନୋହୁବଟି କଳବଲ
ଫିଙ୍ଗିବେ ସେ ନେତ୍ର-ଭଲ୍ଲ ଧୀରେ ଧୀରେ ଚଳି ଚଳି ଗୋ । ୩ ।
ନାଗେଶ୍ୱର ନାଦପର କଟୀ-କିଙ୍କିଣୀଙ୍କ କର
ଖେଳାନ୍ତି ଅଦ୍ଭୁ-ତ ଭଙ୍ଗୀ ଧୀରେ ଧୀରେ ଚଳି ଚଳି ଗୋ । ୪ ।
ରାମଚନ୍ଦ୍ର ଦେବ ଭଣି ଭ୍ରାଷଇ କେଉଁ ରମଣୀ
କଲେ କେତେ ଭଙ୍ଗୀ କାଳି ଧୀରେ ଧୀରେ ଚଳି ଚଳି ଗୋ । ୫ ।

---

( ଗୋରୁ ଗୋପାଳଙ୍କ ମେଳେ ବଂଶୀବଟରୁ ଶ୍ରୀପତିଙ୍କର ପ୍ରବେଶ ଓ ଅର୍ଘ୍ୟଥାଳ ଘେନ ଗୋପୀଏ ବନ୍ଦାପନା କରିବା )

ସ୍ୱର ମଙ୍ଗଳଧନଶ୍ରୀ—ତାଳ ପଢି ।

ଗୋପୀମାନେ—

ଗୋପୀଏ ଅର୍ଘ୍ୟ ବନ୍ଦାନ୍ତି ମଙ୍ଗଳ ଶୁଭ ମଙ୍ଗଳ । ୦ ।
ଗୋଧନ ବାହୁଡା ବେଳେ ଗୋରୁ ଗୋପାଳଙ୍କ ମେଳେ ।
ପଛେ ଶ୍ରୀକୃଷ୍ଣ ଗୋପାଳେ ଚଣୋଷି ଜାମ୍ବୁ ଡାଳେ ଡାଳେ । ୧

ବଜାଇ ଖେମଟା ତାଳ    କରତାଳ ମୃଦଙ୍ଗ
ନାଚନ୍ତି ନନ୍ଦଦୁଲାଳ ଗୋପନଗର ଚହଳ । ୨ ।
କର୍ଣ୍ଣରେ କୁଣ୍ଡଳ ଲୋଳେ    ନୃତ୍ୟ ତାଳ ପଡ଼ିଗଲେ
ବଂଶୀ ବାଇ ନେତ୍ର ଠାରେ ହରଷେ ମନକୁ ହରେ । ୩ ।
ପଦ୍ମନାଭ ଦେବ ବୋଲେ    ଏହା ନୃତ୍ୟ କେତେବେଳେ
ଶ୍ରୀକୃଷ୍ଣ ରଙ୍ଗେ ରସିଲେ ପାଇ ଥିବା ଭାଗ୍ୟ ଥିଲେ । ୪ ।

---

( ଗୋରୁ ଗୋପାଳଙ୍କ ସହିତ ଶ୍ରୀକୃଷ୍ଣଙ୍କର ପ୍ରସ୍ଥାନ । )

ପରଜ । ତାଳ ଝୁଲା ।

ଯଶୋଦା—

କି ଦେଖିଲା ଆଜ ନେତ୍ର ଲୋ ସଜନ । କି ଦେଖିଲା ଆଜ ନେତ୍ର ।
ଲଳିତ ମୂରତି କଳିତ ନୋହିଲା ଦଳିତ ଅଞ୍ଜନ ଗାତ୍ର । ପଦ ।

ଅଳକା କପୋଳେ ଚପଳା କି ଖେଳେ କେଶୀପୁଚ୍ଛ ଚନ୍ଦ୍ରଚୂଳ ।
ରତନେ ଜଡ଼ିତ ଯତନେ କୁଣ୍ଡଳ ଝଲକେ ଗଣ୍ଡମଣ୍ଡଳ । ୧ ।

ହୃଦରେ ପଦକ କରଇ ମାଦକ ବାଦ କରେ ନଶାକରେ । କାମିନୀ
ଚିତ୍ତ-କୁମୁଦ ପ୍ରଫୁଲ୍ଲିତ କରୁଥାଇ ଲୋଚନରେ । ୨ ।

କରରେ କଙ୍କଣ ମୁରଲୀ ବଦନ ପଦ୍ମରେ ନୂପୁର ଶୋଭେ ।
ସୁବାସ କୁସୁମ ମାଳ ମାଳ ମାଳା ହାର ବେଜପୁର ମୋହେ । ୩ ।

ବାହୁ ପିନ୍ଧିଛନ୍ତି କାଛୁ ପୀତାମ୍ବର ଅତର କର୍ପୂର ଉଛୁ । ବାଇବାକୁ
ଆଉ ଅଛୁ କି ସେ ଶ୍ୟାମ ସୁନ୍ଦରପଣକୁ ଛଡ଼ି । ୪ ।

ବୋଲେ ବନମାଳୀ ସେ ପଟ୍ଟନାୟକ କାଷନ୍ତି ଯଶୋଦମଣି । ନଟ
ଲଗାଇବା ହଠ ବଜ ଭାର ନଟବର ବେଶଠାଣୀ । ୫ ।

---

ରାଗ ଲଳିତ, ଏକତାଳୀ ।

ଏକ ଗୋପୀ—

ତାଙ୍କୁ ଚହ୍ନାଁ ନା ଲୋ। ମିତ ! କହୁଛୁ ହିତ । ଘରଚୁଡ଼ା କୁଳଛଡ଼ା ତା ପାଶେ ଯାଅ ନା । ଘୋଷା ।

କଳାବନ୍ତ ଲୋକ ଯେହୁ । ଦୁରନ୍ତ ଅଟଇ ସେହୁ । ନାହିଁ ତାହା- ଠାରେ ପରସ୍ପର ବିବେଚନା । ୧ । ଅମୃତ ବଚନ ଶୁଣାଇ । ମାଗି- ଲେ ସେ ନ ଦିଅଇ । ଯେତେ ସ୍ନେହ କଲେ ତାର ପାଶକୁ ଯାଅ ନା । ୨ । ଅଣି ସ୍ନେହେ ଧରୁ କୋଳେ । ଜାଣିଛୁ ତା ବାଳକାଳେ । କ୍ଷୀରପାନ ଦେଲାବେଳେ ମାଉସି ପୂତନା । ୩ । ମାନ ସଜନ ମୋ ଗିର । ଅଟଇ ସେ ଦଗାଦାର । ଉଡ଼ୁଛି ଅଙ୍ଗାର୍ଣ୍ଡି କେତେ ଗୋପପୁରେ ତା ନା । ୪ । ଗଜଇନ୍ଦ୍ର ଦେବ କହୁ । ଶୁଣି ତା ପରଶଣ- ସଖୀ । ବୋଲେ ସେ ମୋହର ସବୁ ତା ମୋତେ ତୁ କହ ତା । ୫ ।

---

ଦ୍ୱିତୀୟ ଦୃଶ୍ୟ ।

---

( ଯମୁନାତୀରେ କଦମ୍ବମୂଳେ
ଦାମ ସୁଦାମ ମଧୁ ପ୍ରଭୃତି ସଖାଗଣ ସହିତ
ଶ୍ରୀକୃଷ୍ଣ ଉପବିଷ୍ଟ । )

ରାଗ ଝିଂଝିଟ—ଆଡ଼ତାଳୀ ।

ସୁବଳ—

ମୋ ଶ୍ୟାମ ହେ କାହିଁକି । ଆଜ ଏ ବିରସ ବିରସ ବିରସ । ପଦ ।

ଫୁଟା କଞ୍ଜର ଶିରୀ        ଛଟା ମୁଖମାଧୁରୀ
କେ ଟାଣିଛି ସେ ସରସ ସରସ ସରସ । ୧ ।
ଯାଉ ଜଣା ଭ୍ରମର        ଥାଉ ଏ ପରକାର
ଦାଉ କା ଭଏ ନ ରସ ନ ରସ ନ ରସ । ୨ ।

ଘଟେ ସ୍ୱାମନ୍ତରାପ୍ତ          ଅଶେଷ ଦୁଃଖଚୟ
ନାଶେ ତାର ସେ ହରଷ ହରଷ ହରଷ । ୩ ।

—:୦:—

ଖମ୍ବାଜ ସୁରଟ । ତାଳ ଝୁଲା ।

ଶ୍ରୀପତି—

ରଖିଲା ମନ ବମ୍ବାଧରୀ ଧରୁ ରେ । ପଦ ।
ରମଣୀ ସେ କାହାର          କୁଞ୍ଜ ହୋଇ ବାହାର
ଗତି ମନ୍ଥରେ ଜନ୍ଦା କରୁ କରୀ ରେ । ୧ ।
ରଖାଣିଲା ହାଟକ          ପଙ୍କ କାନ୍ତ ଝଟକ
ଲୁବ କ ତତ୍ତ୍ୱ ଅପସ୍ୱରୀ ସର ରେ । ୨ ।
ରଦବାସେ ପ୍ରକାଶ          ଝଟକ ମୃଦୁହାସ
ପଲକ ଭାଙ୍କୁ ଅନୁସର ଧରୁ ରେ । ୩ ।
ରଙ୍ଗୀ ନେତ୍ର ଉଚତ          କୃଷ୍ଣ ତାଳ ଦର୍ଶିତ
ହେଲା ମରମେ ସ୍ମରମଣୀ ମାରୁ ରେ । ୪ ।
ରଣ ମୋତେ ସେବାରେ          ଏବେ ଇଶାନ୍ତ ବାରେ
ସଙ୍ଗେ ଥିଲେ ଅନୁବୃଣୀ ଗୃହ ରେ । ୫ ।
ରସେ ଉପେନ୍ଦ୍ର କହୁ          ମିତେ ବୋଲେ ମାଧୋଇ
ମନ୍ଦୁଷ୍ଟି ହେଲା ହରଅରୁ ଅରୁ ରେ । ୬ ।

—:୦:—

ପରଜ—ଝୁଲା ।

ସୁଦାମ—

ସଯୋଗୁ ପଡ଼େ ପ୍ରମାଦ ରେ । ସଙ୍ଗାତ । ସେଗୀ, ଭୋଗୀ, ଯୋଗୀ, ଗୃହ, ଅନୁରାଗୀ ପାଷ୍ଟକୁ ନ ମାଡ଼େ ଜଦ ରେ । ଘୋଷା ।

ଶୁଭ ଅଗମନେ ବରଷକ ଦିନେ ନମିଷ ପସ୍ତେ ନଣା । ଦଇବ ବମୁଖ ଯୋଗଂ ତନୁ ଦୁଃଖ କରଇଲା ଦୁଷ୍କୃଦଶା ରେ । ୧ । ସୁରତ

ଉଷ୍ଟୁଙ୍କେ ରତନ-ପଲଙ୍କେ ଶେଯେ ଯାଉଥାଇ ଦିନ । ଉହିଁକି ଦୃଷ୍ଟି ତ
ହେଲେ ଉପସ୍ଥିତ ସଂସାର ତପସ୍ୱୀମାନ ।୨। ଯେଉଁ ମାନସରେ ଧିଆନ
ବଶରେ ଦେଖୁଥାଇ ବ୍ରହ୍ମଜ୍ଞାନ । ହୃଦ ସଙ୍କଳପ ଅଡ଼ିଲେ ଅଳପ
ବାନ୍ଧବର ଅଭିମାନ ରେ ।୩। ତଉପାଶେ ଗୃହିଁ ଚଞ୍ଚଳତା ବହୁ ପକ୍ଷି
ଇତର ତସ୍କର । ହଂଶୀଅଲ ହାଲେ ପରଛାଞ୍ଚି ହୋଲେ ଥିବାହାଲେ
ତା ପଡ଼ିର ।୪। ହଯୋଗ ଯୋଗାଇ ଗୃପତ ସୁରତ ବାଞ୍ଛାକୁ ସଙ୍କେତ
ସ୍ଥାନ । ଉଛନ୍ନେ ହରଷେ ହବସୂର୍ଯ୍ୟ ଶେଷେ ଉହିଁରେ ସପତ୍ନୀ ଛଳ ।୫।

—:(*):—

## ଅଷ୍ଟାବଣ୍ଣ ଝୁଲା ।

ଶ୍ରୀପତି—

ତରୁଣୀ ଗୃହିଣୀ ଗୋପୀ ଗୃହିଁ ଚମକ ଗଲା ମୋ ମତି । ପଦ ।

ନେତ୍ରପ୍ରାନ୍ତେ ସକ୍ଷ୍ମ ଅଞ୍ଜନ, ତ ଷାଣିରେ ହରଛୁ ମନ, ମାଘ
ଦେବ ପେବେ ବାଉଛନପନୀ ସମ୍ଭାଳ ପାଉଚ ହେଉଛେ ହା ସ୍ଥିତି । ୧ ।
ଝୁମ ଝୁମ ଝୁମଝରଲା, ଝମକାଇ ଗୃଳିତା ଲୀଳା, ଯୁବାଛନ ଧୈର୍ଯ୍ୟ-ସ୍ଥିତି
ମନ୍ଥନକୁ ମନ୍ଦର ଅଟେ ସେ ମନ୍ଥରଗତି । ୨ । ମାଙ୍ଗ ସ୍ୱର୍ଣ୍ଣ ମଧ୍ୟେ ହ
ଜନ୍ତ, ଚଳାଇଛୁ ସିନ୍ଦୂର ଶିଖା, ଗନ୍ଧ ହ ରଚନା ବଳାଇ ଝାମ୍ପୁଛୁ ଗିଳନ
ତଦନ-ରଚ୍ଛନାପତି । ୩ । ଶୁଣି ତାର ମଞ୍ଜୁ ସ୍ୱରଷ୍ଟ, ବୀଣା ପିଙ୍କିଦେବେ
ସରଗ୍ଧ । ନାସା ଫୁଲା ନଥ ଝୁଲିବା ଠାଣିରେ ଦମ୍ଭ ହଟାଇ ମହ୍ଲାଇତ
ଯନ୍ତ୍ର । ୪ । ଭଲା ତାର ଭୂଲତା ଭଙ୍ଗୀ, ହାଳହାଳ ହାଳଭୁଜଙ୍ଗୀ
ମାର ଲାରତିଆ ବାରଂବାର ହଉ ଖେଳାଉଛୁ ହ ତା ବଦନ ହତି ॥
ସମକୃଷ୍ଣ ହୃଦେ ରସରେ, ଘ୍ରାଦଲେ ତା ଗୁଣ ନ ସରେ, ମୃଦେ ବାହ
ଦେଇ ମନେ ହସିବାର ବାରଣଗତିର ହେଉଛେ ପୀରତି । ୬ ।

### ରାଗ ଚନ୍ଦ୍ରକା କାମୋଦୀ । ତାଳ ଝୁଲା ।

ସ୍ତବନ—

ସ ରସିକ ସେ । ବରସ ଯାହାର ମୁଖୁଁ ନିକସେ । ପୁରୁଷ ହୋଇ ଯେ ନାରୀ ମନ-ସୁନା ପ୍ରୀତିକଷଟୀରେ ଯେବେ ନ କସେ । ଘୋଷା ।

କଳନା ନ ଯାଏ ଲଳନାର ମୁଖ କମଳ ଗନ୍ଧେ ସଦା ବଙ୍କରେ । ଅଳି ହୋଇ ଯେବେ ତୃପ୍ତି ନ ପାରଇ ଅଳୀ କରିବାର ତାର ଧିକ ସେ । ୧ । ତରୁଣୀ ଗୃରୁଣୀବଚନ ଛଳାର ମରମେ ନୟନ-ଶରକୁ ପେଷେ । ତହିଁକି ଯେ ପ୍ରତିଉତ୍ତର ନ ଦେଲା ସୁବାବୃନ୍ଦ-ମଧ୍ୟେ ଅବିବେକ ସେ । ୨ । ଭିତରେ ସଦୟ ବାହାରେ ସଭୟ ଦେଖାଇ କହନ୍ତି ମାନିନୀ ସେ । ଖେଳାଇ କରି ଯେ ତୁଳାଇ ନ ନେଲା ତ ଜାଣଇ କିଛୁ ବିନୟ ସେ । ୩ । ପଙ୍କଜାକ୍ଷୀ ବାଳା ଯା-ପଛେ ନ ବସେ କେଉଁ ଭାଗ୍ୟବନ୍ତ କି ଅଧିକ ସେ । କହଇ ଶେଖର ମୋହିନୀ ଉତ୍ତର ଜାଣିମୁ ତାହାର ଜନ୍ମରକ ସେ । ୪ ।



### ରାଗ—ବସନ୍ତ, ତାଳ ପହପଟ୍ଟ ।

ଶ୍ରୀପତି—

ଈଶ୍ୱର କଲେ ପାଇବ । ଈପ୍ସିତେ ଦୁଃଖ ଦହିବ । ଈଶ୍ୱରୀ ତାଙ୍କ ଅର୍ଦ୍ଧାଙ୍ଗ ହେଲା ପରି ଗୋପୀଅଙ୍କେ ଜଡ଼ି ରହିବ । ଘୋଷା ।

ଇନ୍ଦୀବରଅଳକ ଶ୍ରୀମୁଖେ ତବୁକ ଧରି ସବୁ ଚୁମ୍ବ ବହିବ । ଈକ୍ଷଣ ଈକ୍ଷଣବାଣେ ବନିପକା ଦୋଷ କରିଛୁ ମୁଁ କହିବ । ୧ । ଈଶାନ-ପ୍ରତିମା କୁଚେ ପାଣିପଦ୍ମ ଚଢ଼ାଇ ତଡ଼ିକ କମ୍ପିବ । ଈଶା-ସର ନଖେ ଚନ୍ଦ୍ରକ୍ଷେତ୍ର ଚଷି ପ୍ରେମବୀଜ ତହିଁ ବୁଣିବ । ୨ । ଈକ୍ଷୁରଥା ମୋର ଏଥିରୁ ଅଛି ବ ଅଧରୁ ଅମୃତ ପିଇବ । ଈଣୀ ଈଣୀ ଜାକ ସଞ୍ଜୀବନୀ-ମନ୍ତ୍ରେ କାମଯମମୁଖୁଁ ଜୀଇବ । ୩ । ଈଷଦ୍ଧାସ ମୁଖେ ପ୍ରକାଶ କରିଇ

ଗଚ୍ଛିଉଥବେ ଉଷ୍ଣାଇବ । ଇଷ୍ଟ ପୂର୍ବେ ସେହୁ କାମେ କରଅନ
ବଦଅନ ଶୋଭ୍ନ ଗୃହ୍‌ବ । ୪ । ଈଷତ୍ସ ନ କଲେ ଦଇବ ମନେ ମୋ
ନୂଦଇ ବଚ୍ଛେଦ ହୃବ । ଭିଦ୍ଦୃଷ ଘଗ୍ୟ ଭ ଅଚ୍ଛୁ ଉପଇଦ୍ଦ ବୋଲେ
କେବେ ଭନ୍ନ ନୋହୁବ ।

———

ଦ୍ୱିତୀୟ ଦୃଶ୍ୟ ।

ଉପବନ ।

———

(ଶ୍ରୀମତୀ, ଲଳିତା, ବିଶାଖା, ଗୋପାଙ୍ଗନା ବିଚରଣ କରୁ୬)

ସ୍ୱଗ ଅରବୀ । ତାଳ ଝୁଲା ।

ଶ୍ରୀମତୀ—

ଭ ନାଦରେ ପ୍ରାଣଯଙ୍ଗିଭ ଶୁଭୁ କବୁଞ୍ଜବନେ । ଶୁଣିରେ ସୁଧା
ବରଷେ ଯଥି କାଣେ ଅପଥନେ । ପଦ ।

ଦିଗ ବିଦିଗ ପ୍ରଷ୍ଣଇ, ଖଗ ମୃଗ ଜଡ଼ କଇ । କୁଳବତୀ ଲକ୍ଷାଗନ୍ତି
ଫିଟାଉଛୁ ଭ ଯଭନେ । ୧ । ଭୋଳଲା କୁସୁମ କରୁ, ଗନ୍ଧପଞ୍ଜୁ
ରମ୍ୟୋଜ୍ଜୁ, ରହୁ ମୁଁ ପାଇବ ନାହୁଁ ଘଡ଼ି ଦେ ନେଇଁ ସ୍ୱଦନେ । ୨ ।
ନ ଅସୁଁ ସେ ମୋ ପାଶକୁ, ଲଭନ୍ଲଣି ଏ ଦଶାକୁ, ନୀପଫୁଲ ପଚ
ରୋମ ଉଠିଲା ମୋ ଅପଙ୍ଗନେ । ୩ । ବଜାଏ ବରଦ୍ଧବଂଶୀ, ବକ୍ତ୍ରଞ୍ଜ-
ଦେବତା ବସି, ଧ୍ୱଷଇ ଗୋପାଳକୃଷ୍ଣ ପ୍ରକଟିଲା ଚ୍ଛିଭୁବନେ । ୪ ।

———

ବେଣାକ୍ଷ, ଅଠତାଳୀ ।

ଲଳିତା—

କେ ମୁରଲୀ ବଜାଉଛୁ ବୃନ୍ଦାବନେ ଗୋ । ତା ପର ନାଗର
ଅଉ ନାହୁଁ ଜଣେ ଗୋ । ଘୋଷା ।

ସେ ନାଦ କର୍ଣ୍ଣେ ବାଜିଲା, ପାଦ ମୋର ନ ଚଳିଲା, ମାଉ

ମରମେ ଭେଦିଲା ପଞ୍ଚବାଣେ ଗୋ । ୧ । ମୁରଲୀ ବଡ଼ ପ୍ରମାଦ, କଲା
ମୋତେ ଅପ୍ରମାଦ, ପତିବ୍ରତା ଛଡ଼ାଇଲା ପର ମଣେ ଗୋ । ୨ ।
ଚିତ୍ରପଟେ ଲେଖାଇବ, ଯତନରେ ରଖାଇବ, ଚିତ୍ତ ତହିଁ ଶଣ୍ଠାଇବ
ଅନୁକ୍ଷଣେ ଗୋ । ୩ । ବନମାଳି ଦାସ କହେ, ନନ୍ଦସୁତ ମନ
ମୋହେ, ଭକ୍ତି ମୁଁ ମଜ୍ଜି ରହିବ ଶ୍ରୀଚରଣେ ଗୋ । ୪ ।

———

ଶଙ୍କରାଭରଣ । ତାଳ ଝୁଲା ।

କଶାକ୍ଷା—

ସହି ନିକୁଞ୍ଜବନେ ବଂଶୀ କେ ବଜାଏ ।
ଶ୍ରୁତିଯୁଗେ ସୁଧା ବରଷାଏ । ପଦ ।

କେ ବନଦେବତା କି ମନ୍ତ୍ର ଗାଏ । ପଲ୍ଲବିତ କରେ ଦ୍ରୁମ ଲତାଏ ।
ଖଗ ମୃଗ ପୀରତି ଲଗାଏ । ୧ ।
ପତିବ୍ରତା ସତୀ ମତି ଭୁଲାଏ । ମନ ମଥନରେ ତନୁ କମ୍ପାଏ ।
ଲଜ୍ଜାଗ୍ରନ୍ଥି କି ଯତ୍ନେ ଫିଟାଏ । ୨ ।
ଟୋପଲା କୁସୁମ କଳି ଖସାଏ । ଅସମ୍ଭବକୁ ସମ୍ଭବ କରାଏ ।
ଶୁଣାଇ ନ ଥିଲା ଆଜଯାଏ । ୩ ।
ବନମାଳୀ ଏହି ରସରେ ଗାଏ । ତା ବିନୁ ମୁରଲୀ ଆନ କେ ପାଏ ।
ସହି ସେହି ନାଗର କହ୍ନା ଏ । ୪ ।

———

ଖଙ୍କସ୍ବଭରଣ । ତାଳ ଝୁଲା ।

ଦୁଷ୍ଟ —

ନବନାଗର କାହ୍ନା ମୁରଲୀ ବଜାଏ ।
ଶୁଣିଲା ଭରୁକୁ ପଞ୍ଚବାଏ । ପଦ ।

କ୍ଷୀଭରବ୍ଧି ନୋହେ ତନୁ କମ୍ପାଏ ।

ବଶିଶ ନୋହେ ମରମକୁ ପାଏ ।
ଶିଖି ନୋହେ ମାନସ ଭଡାଏ । ୧ ।
ହେବା ଛାଣେ ହେନ୍ତୁ ମନ୍ତ୍ରର ଗାଏ:
କର୍ଣ୍ଣେ ବାଜି ଅଭ ନ ଚଳେ ପାଏ ।
ହଳେ ଧର ମଦନେ ମତାଏ । ୨ ।
ହଟ କର ଛଳ— ଘାଟକୁ ଯାଏ ।
ଅଭିଶିବୁନେ କଳଙ୍କ ଲଗାଏ ।
ନୀପମୂଳେ ଭଙ୍ଗୀ ଶୋଭି ପାଏ । ୩ ।
ବନମାଳୀ ଏନ୍ତୁ ଚିତ୍ତରେ ଗାଏ ।
ଅସତ କଥାକୁ ସତ କରାଏ ।
ଭାବୁ। ହେନ ଏତେ ଦୁଃଖ ପାଏ । ୪ ।

———

ରାଗ ପରଜ, ଝୁଲା ।

ଅନ୍ୟ ଗୋପୀ—

ନନ୍ଦକିଶୋର ପଦ । ଶୋଭିଲେ ନ ଶବ ଚଉଦପୁରୀ । ଘୋଷା ।

କେତେହାଲ ବସି ବନ୍ଧୁ ଯତନେ । ରଚାଡ଼ିଲା ଚନୁନୀଳରତନେ । ଅଳପ ଅନାଇ ଦେଲେ ଅପାଙ୍ଗେ । ଅଙ୍ଗଯାକ ପୂର ରହେ ଅନଙ୍ଗେ । ୧ । ନୟନନନ୍ଦନ ତା ମଦନ-ଛୁରୀ । ସୁଖ ଦୁଃଖ ତହିଁ ରହନ୍ତି ପୂର । ଥରେ ଚାହିଁ ଦେଲେ ଅଳପ କର । ଜୀବ ଯିବାଯାକ ନୋହେ ପାଶୋର । ୨ । ଫୁଲକାଣ୍ଡ ଗୁରୁ କୋଦଣ୍ଡ ପର । ଭ୍ରୂଲତା କେନ୍ତେ ତାନଗ୍ନେ ଧର । ଧଇର୍ଯ୍ୟ ନ ରହେ ଚାହିଁଲେ ଦୂରୁ । ବରତି କେ ଯିବ ଶ୍ୟାମ ଅଗରୁ । ୩ । ଗୋପାଳକୁଳଙ୍କ କୁଳବହୁଡ଼ି ଇ । ନାଗରିସଙ୍ଗ ଦେଲେଣି ଛଡ଼ାଇ । ବଷପରୁ ହେଲା ଲୋଭ ମୂର୍ତ୍ତିସ । ସନ୍ତତ ନୟନେ କଲା ନିବାସ । ୪ । ବନମାଳୀ ବୋଲେ ମୋହନ ଦେହ ।

ମୋହିନୀମାନଙ୍କୁ କରାଇ ମୋହ । ଭଞ୍ଜିତ ବହଗା ଦେହବାର ବନ୍ଧ । ଏନାଛି ପଶୁଏ ସ୍ତବକ ବୃଶ୍ୟ । ୫ ।

---

### ଚତୁର୍ଥ ଦୃଶ୍ୟ ।

---

ଯମୁନାତଟରେ କଦମ୍ବମୂଳେ

( ଦୂତୀ ପ୍ରବେଶେ କୃଷ୍ଣ କଦମ୍ବମୂଳୁ ଉଠି ବୃତ୍ତାନ୍ତ ପଚାରି )

ରାଗ କୁମ୍ଭକାମୋଦୀ । ତାଳ ଆଦି ।

ଶ୍ରୀପତି—

ରସବନ୍ତ କାହାର ଯୁବତି଼ରେ କହ କହ ପ୍ରାଣସହ । ଷଣ୍ଡି ଯାଉ- ଥିଲା ଚଣ୍ଡୀଷପଥ ଦେଇ ମଣ୍ଡି ଦେଉଥିଲା ମହୀ । ଘୋଷା ।

ମଦନକରର ମୁକୁରକୁ ନନ୍ଦେ ବଦନ ପୂର୍ଣ୍ଣିମାଇନ୍ଦୁ । ହସି ଯାଉଥିଲା ଅଳପ ଅଳପ ଖସି ପଡୁଥିଲା ମଧୁ । ୧ । ଖେଳ ଯାଉଥିଲା ଖଞ୍ଜନ ପକ୍ଷକୁ ଚାହିଁ ଯାଉଥିଲା ଆଖି । ନ ଭଜିବ ଅବା କେଉଁ ଯଷ୍ଟ ତାର ଭଲ ଭା ଛାଣ୍ଡ ଦେଖି । ୨ । ପଙ୍କଜକନ୍ଦରେ ଦୂର କରୁଥିଲା ଝଲକ ମୁଖ- ମଣ୍ଡଳ । ରଷାଣ କାଞ୍ଚନ ଗୋଷ୍ଠୀକ ଦେଖିଲେ ପାଷାଣହୁଁ ହେବ ଜଳ । ୩ । ଝୀନ ରଙ୍ଗ ଶାଢୀ ଫୁଟି ଦିଶୁଥିଲା ମୀନ ସୁଲୋଚନା ଲୁଚ । ଯେତେ ଯତନେ ଘୋଡ଼ାଇ ଯାଉଥିଲା ଘେତେ ଦିଶୁଥିଲା ଉଚ । ୪ । ଥଳକମଳ କି ଫୁଟି ଯାଉଥିଲା ଚରଣ ଶୋଭା ଦେଲେ । କନକଲତା କି ଲୁଚି ଯାଉଥିଲା ଅନେକ ରତନଫଳେ । ୫ । ରଙ୍ଗେ ଯାଉଥିଲା ରମଣୀରତନ ଅଙ୍ଗେ ସାରଶୋଭା ଯେନ । ପାଦେ ଶୋହବାର ବାଜେଣୀ ନୂପୁର ନାଦେ ମୋହୁଥିଲା ମନ । ୬ । କହେ କବି ଦ୍ୱିଜ ଶ୍ରୀଧର ଶ୍ରୀକୃଷ୍ଣରସେ ହ୍ରାସ ଗାଇ ଦୃଷ୍ଟି । ଶମ୍ବରଶର ଭ୍ରମ କରାଇଲା ସ୍ଥଳ ଭୂମି ପ୍ରିୟବନ୍ଧ । ୭ ।

---

## ଭୈରବୀ—ଝୁଲା ।

ଦୂଷ୍ଣ—

ନଟନାଗରବର, ବାଟରେ ବଟ ନାଠ ଭୁ କର ନା । ପାଟଘ-କୁଳ ରାଟ-ସୁତ ଅପାଟପ କନ୍ଧ ନା । ଘୋଷା ।

ଚଣ୍ଡଳମତି ଅତି ପ୍ରପଞ୍ଚ ବାଳକମତି ମୁଣ୍ଡ ମୁଣ୍ଡ । ପାଞ୍ଚ ସ୍ତନ୍ଦଳ ଦୁଷ୍ଟ ବଦନ ଅଞ୍ଚଳ ଧର ନା । ୧ । ଯା କର ଧରୁ ବନତିମାନ କନ୍ଧୁ ନ ସ୍ପରଇ ରଜନୀ ଦିନ । ତାପରୁ ତୁ ନ କର ମୋହନ ଯା ଯା ରନ୍ଧ ନା । ୨ । ଏବେ ଫିଦ୍ଧାଣ ନ କର ଠାଣ ନୃପତି ରାଣ ଏଥି ପ୍ରମାଣ । ଗୋଧନ ଧନ ରହୁବେ ଛାଣ ମଦଘ ମୁଣ୍ଡ ନା । ୩ । ଘ୍ରଷଇ ଦ୍ୱିଜ ପଦ୍ମନାଭ ପଲନ୍ଧର ଏ ଢ ବଟସ୍ପ୍ରଧ । ପରଦାର ରତି ଏ ଅପକୀରତି ବାଦେ ରସ ନା । ୪ ।

---

## ମଲ୍ଲାର ।

ଗ୍ରୀ,ପତି —

ଝନ୍ଧୁ କେ ଦେ ରେ, ମୋ ମନ ରହୁଲା ମଞ୍ଜୁବେଶରେ ।
ଝଲମଲ ଝଲମଲ ଝଲକା ଝଲକେଁ । ଅଟଙ୍କ ରହୁଲ
ପଲକେ । ନାହୁଁ ନ ଥିଲା ଏ ମନ୍ତ୍ରୀଦେଶରେ । ପଦ ।

ଗୃରପାଶେ ସ୍ୱଦଚଣ୍ଡୀ          ମଧ୍ୟେ ଗୃଲେ ମନୋହାରୀ
ତାରା ମଧ୍ୟେ ଚନ୍ଦ୍ରମା ସାଦୃଶରେ । ୧ ।
ଭୃଙ୍ଗମାଳା ପଛବାଗୀ          ଗୃମଳ ଗୃଳ ଜବାରୁ
ତନୁ ତାର ପଦ୍ମପରା ବାଘ ଲେ । ୨ ।
ମନେ ଭେଦି ମାରଶର          ମଣିରୁ କଟାକ୍ଷ ତାର ।
ଛ ରଙ୍ଗରେ ଗୃଲେ ବେଢ଼ି ପାଶ ରେ । ୩ ।
ଝଷ୍ଟିତରେ ପୋତି ମଥା          ମଦେ ଦସି କହୁଁ କଥା ।
ଥରୁଥାଇ ଫଲଝଲା କେଶ ରେ । ୪ ।

ଦୃଶିତ ସ୍ୱପନ୍ତ ଦଉ                ଲଭବ କେମନ୍ତ ଛଉ ।
ନାରାୟଣ ସିଦ୍ଧ ଦେବ ଭାଷ ରେ । ୫ ।



ରାଗ—ତୋଡ଼ୀ ପରଜ । ଅଡ଼ତାଳୀ ।

ବୃନ୍ଦା—

ଡର ନାହିଁ ଢ ଦେ ପରତରୁଣୀ ଦରଣ ।
ଢୋର ଲାଗି ଦେର ପଡ଼ିବା ଦେବଟ ଶେରପଦ ଅଚରଣ । ପଦ ।
ଢୋଳାପ୍ରତିମାର ପରାୟେ ତୁମ୍ଭଙ୍କୁ ଯଶୋଦା ଅଛନ୍ତି ପାଳ ।
ଢୁବଟ ଧନ ଦେଇଚ ମୋହନ ଲୋଚନ ଯେ ଭ୍ରୁଲପାଳୀ । ୧ ।
ଡାକା ଦେବା ଦିନେ ଅଇଲେ ଭତ୍ତାନେ ଦେଖିଛି ଷଣ୍ଢଦଶା ।
ଡାଳ ମଧ୍ୟମାଳୁ ଡାଳ ଅଣିମାଳୁ ଏଠାଲୁ ଢାଦା ଭରଷା । ୨ ।
ଢବଡାତ ତାଉ ଢଃସ୍ୱଭବ ଗୃହପ୍ରତ୍ରରେ ଜୟନପୁର୍ଣ୍ଣ ।
ଢଦ୍ରତଦ ଦେବ ମୃଦୁ ଅବୟବ ଶ୍ୟାମ ଶ୍ରୀଅଙ୍ଗଟ ଖ୍ରେଣ୍ଣ । ୩ ।
ଢାଢାଇ ଢାଣ ମୋହନ ବଂଶୀରବେ ବଦ୍ଧ ସୂରେଖ ଏ ବନେ ।
ଡଇଁ ଦେବଂ ଢିନା ଅମ୍ଭେ ଫଳ ଦନା ନ ପଡ଼ୁ ତା ଅମ୍ଭ କାନେ ।୪
ଢାଳମ୍ଭମନ୍ତ୍ରି ମନ୍ତ୍ର ନଦଶନା ଯେ ଖେଳୁଥାଇ ତୁମ୍ଭ ଭୁଲେ ।
ଦେଉଁଥାଉ ବଳପାକ ତୁମ୍ଭ ମନ ଶ୍ରୀହରି ଚନ୍ଦନ ବୋଲେ । ୫ ।

---

ପଞ୍ଚମ ଦୃଶ୍ୟ ।

ଉଦ୍ୟାନ ମଣ୍ଡପ ।

---

( ଗୋପାଙ୍ଗନାମାନଙ୍କ ସହିତ ଶ୍ରୀମତୀ ଉପସ୍ଥିତ । )

ବେଲାବଳ । ଝୁଲା ।

ପ୍ରଥମ ଗୋପୀ—

ହେଲା ବଡ଼ ପରମାଦ, ପ୍ରାଣସଜନ ରେ । ଶୁଣେ ନ ରଞ୍ଜନ
ଧଇର୍ଯ୍ୟ ଭଞ୍ଜନ ମୋହନମୁରଲୀ ନାଦ । ଘୋଷା ।
ଡାକେ ସଇସରେ, ଦ୍ଧ ରେଖେ ବାସ୍ତରେ, ହରଡେ ଲାଗି

ବିବାଦ । ଶୁଣିବା ମାତ୍ରକେ, ଅନ୍ୟ ଭା ବ୍ୟକ୍ତକେ, ମନରେ ହୁଏ ବିଷାଦ । ୧ । ଖଲେ ଗୁରୁଜନ, ଦେଲେଣି ଗଞ୍ଜନ, ଝିଙ୍କି କଏ କରି ପାଦ । ଯୋଉଣ ପ୍ରବଳ, କରାଏ ବିକଳ, ମଦନ-ମଦ ଉନ୍ମାଦ । ୨ । ଏ ମଧୁର ଧ୍ୱନ, ଲାଗଇ ମୋ ଧ୍ୱନ, ବାଣରୁ ବଳ ସୁଆଦ । ମଜାଇ ରଖିରେ ପତିବ୍ରତରେ ଜାତି କରେ ପରିବାଦ ।୩। ରାମଚନ୍ଦ୍ର ଦେଉ ବୋଲେ କନ୍ଦେ ଅଉ ଛନ୍ତି ସେ ଗୁଣାନୁବାଦ । ବୋଇଲେ ଯଶୋଦା ଥିଲେ ଏ ପାଶୋର ଲୋକେ ଭାବ ଆହ୍ଲାଦ । ୪ ।

---

## ରାଗ ବାରୁଆଁ—ଅଡ଼ତାଲୀ ।

ଦ୍ୱିତୀୟ ଗୋପୀ—

କୃଷ୍ଣେ ମୁରଲୀ ବାଜୁଛି । ଗଲେ ହେବ ଅପବାଦ ନ ଗଲେ ମରୁଛି । ଘୋଷା ।

ଶାଶୁ ନଣନ୍ଦ ମୋହର ଦେଖି ନ ପାରନ୍ତି । ଯମୁନାକୁ ନୀର ଆଣିବାକୁ ନ ଛାଡ଼ନ୍ତି । ୧ । ମଦନବାଣରେ ତନୁ ଯାଉ ହେଉଅଛି । ଏ ଜଳଦ ବାହୁଁ ଶବ ଅସ୍ଥିର ହେଉଛି । ୨ । ସେ ମୋହନବେଣୁଧର ପ୍ରାଣର ସଙ୍ଗାତ । ଗୋପାଙ୍ଗନାମାନେ ହେଟି ଦ୍ୟନ୍ତି ହୁଳହୁଳି । ୩ । କୁଳଛଡ଼ା ଘରବୁଡ଼ା ନାଗର କହ୍ନାଇ । ବୋଲେ ବନମାଳୀ ମିଛୁ କୃଦେ ପ୍ରାଣସହି । ୪ ।

---

## ରାଗ ଚୁମ୍ବା, ଝୁଲା ।

ତୃତୀୟ ଗୋପୀ—

ଯମୁନା ଯିବା କୋହଲା ମିତ । ବାଟେ ଛଳି ବସିଅଛି ନନ୍ଦସୁତ । ଘୋଷା ।

ସେ ପୀତପଟୁଆ, ପଥେ କରି ଠିଆ, ବୋଲୁ ଥାନ୍ତି ବାଣୀ ଅତମିତ । କରି ବଂଶୀସ୍ୱନ, ମୋହି ଅମୃ ମନ, ଚଉକୁ କରାନ୍ତି ବହୁଳତ । ୧ ।

ନ ମନ୍ତ୍ର ପଢ଼ାଇ, ନ ଅନ୍ନ ବାଢ଼ାଇ, ନ ରଖାଇ ଅମୃତ ଅପ୍ରବୃତ୍ତ । ଯମୁନା-କୂଳରେ, କଦମ୍ବମୂଳରେ, ବସାଇ ଦେଅନ୍ତି ହୁରୁମତ । ୨ । ଜଳରେ ପୂରୁଚ, କଉତୁକ ଭ୍ୟାଜ, ବସ୍ତ୍ର ହରି କଲେ ହରବତ । ଖୋଲନ୍ତି ଜଳରେ, ଉଲଙ୍ଗ ହୋଇଲ, କର ଯୋଡ଼ି କର ଦଣ୍ଡବତ । ୩ । କେ ବୋଲେ ଗୋ ସହୁ, ଜଳ ନେବାପାଇଁ, ଯମୁନାଘାଟ ହେଲା ଦୁର୍ଘଟ । ହୋଇଲେ ବାହାର, ତନୁ ଥରହର, ଥିବେ ତନୁରେସ ଓକାଇଛ । ୪ । ଜଳରୁ ବାହାର, ଯେଝା ବସ୍ତ୍ର ଧର, ପିନ୍ଧି ଫେର ଯଉଲେ ଭୁରଗ । ବୋଲେ ବନମାଳୀ ଅଗୋ ବ୍ରଜବାଳ କୃଷ୍ଣ-ଚରଣେ ରଖି ଯା ଚନ୍ତ୍ର । ୫ ।

---

ରାଗ ଭୈରବୀ—ଅଠତାଳୀ ।

ପ୍ରଥମା ଗୋପୀ—

ଶ୍ୟାମ ସମ କମନୀୟତ ନାହିଁ ଆଉ । ତା ବାହୁଭଙ୍ଗୀରେ ମୋର ଦିନ ଯାଉ । ଘୋଷା ।

କି ସୁନ୍ଦର ପୀତପଟ । ତ୍ରିଭଙ୍ଗ ମୁରଲୀ ନଟ । ତା ଶିର ମୁକୁଟ ଦିଶେ ଦାଉ ଦାଉ । ୧ । ଆଜ ମଙ୍ଗଳାଙ୍କୁ ଜଣା । ଥିଲେ ନ ଥିଲେ କରୁଣା । ନୟନସମ୍ମୁଖ ମୋର ଛାଇଥାଉ । ୨ । ପଡ଼ିଗଲେ ତା ନଜରର । ମଦନ ମାଦକଶରେ । ନାରୀ ହୃଦୟରୁ ଖସି ପଡ଼େ ହାଉ । ୩ । ଜନ୍ମିଲେ ନନ୍ଦସୁ ଘନେ । ତାର ପଛେ ବନେ ବନେ । ଶିରେ ଯେବେ ବଲୁଥିବ ତା କଠାଉ । ୪ । କେବେ ରବ ରସେ ଭାସେ । ମନୋରଥ ରଚି ହ୍ରାସେ । ତା ପ୍ରେମସାଗରେ ଚନ୍ତ୍ର ବୁଡ଼ି ଯାଉ । ୫ ।

---

ରାଗ—କାମୋଦୀ । ତାଳ ଝୁଲା ।

ଦ୍ୱିତୀୟ ଗୋପୀ—

ଘନଶ୍ୟାମଙ୍କୁ କୁହାର ତାର ପ୍ରୀତିକି କୁହାର ଗୋ । ଘୋଷା ।

ମଥୁରାକୁ ଦଧି ବେଚ, ଯିବାପଥେ ଗୁଆଳଙ୍କ । ଲୁଟିଯେ ନେଉ-ଥନ୍ତି ଗୋବର୍ଦ୍ଧନ ଗୁହାରେ ଗୋ । ୧ ।

ଭୁଚନଜ୍ଞା କୁଳରେ, ଶୁଣୁଁ ନୀପମୂଳରେ, ପଳାଇ ଅସିଲ୍ଲ ଠାଇ
ଯାଚୁଥିଲା ହାର ଗୋ । ୨ ।

ଶୁଣିଛୁ ମୁଁ ପ୍ରସଙ୍ଗରେ, ଚନ୍ଦ୍ରାବଳୀର ସଙ୍ଗରେ, ନାଗର ବାଞ୍ଛୁଛୁ
ବ୍ରଜଯାବରେ ତାହାର ଗୋ । ୩ ।

ଗୋପାଳକୃଷ୍ଣ କହଇ, କେ ଜାଣେ ବା କାହିଁପାଇଁ, ବ୍ରଜବଧୂ
ହୋଇଛନ୍ତି ସୁରଭି ମାହୁରେ । ୪ ।

---

ରାଗ—ଝୁଲା ।

ଚତୁର୍ଥୀ ଗୋପୀ—

ସଖି ଗଲ ସବେ ଯିବା ମିଳି ମଥୁରାପୁର । ଦେଖିବା ପରା ସବଳେ
ହଟନାଗର । ପଦ ।

ଯେ ମୋହିନୀ ବେଶ ଧରି, ମୋହିଲେ ଅମରପୁରୀ,
ଯାହାଙ୍କର ବେଶେ ଯୋଗୀ ହେଲେ ଶଙ୍କର । ୧ ।

ଯେ କରେ ମନ୍ଦର ଧରି, ରଖିଥିଲେ ଗୋପପୁରୀ,
ଯେଉଁ ପଥ ଗଲେ ଇନ୍ଦ୍ର ହଜ ମନ୍ଦର । ୨ ।

ଯାହାଙ୍କ ମୁରଲୀ ଧ୍ୱନି, ମୋହୁଥ କରେ ଅବନୀ,
ଗୋପାଙ୍ଗନା ସବେ ପରା ଛାଡ଼ନ୍ତି ଘର । ୩ ।

ସେ ମୋହନ ରୂପ ଦେଖି, ସଫଳ କରିବା ଆଖି,
ପାପତାପ ଶୂନ୍ୟ ହେବ ଆମ୍ଭ ଶରୀର । ୪ ।

ଏମନ୍ତ ସକଳ ନାରୀ, ଚଳେ ଧ୍ୟାନ କରି ହରି,
ରାମଚନ୍ଦ୍ର ଦେଉ ବୋଲେ ହେଲେ ବାହାର । ୫ ।

—:o:—

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ ।

( ଯମୁନା ତୀରେ କଦମ୍ବ ମୂଳେ ବଂଶୀହସ୍ତେ ଶ୍ରୀପତି ଉଭା )
( ଦୂରବର୍ତ୍ତୀ ପାଠକୁ ଲଳିତା ବିଶାଖା ପ୍ରଭୃତିଙ୍କ
ସହିତ ଶ୍ରୀମତୀଙ୍କର ଆଗମନ )

କାଫି । ଏକତାଳୀ ।

ଶ୍ରୀମତୀ—

ଦେଖ ଲୋ ସଜନି ସେ କଦମ୍ବମୂଳେ କେ ସେ ।
ନବୀନନୀରଦତନୁ କେତେ ଶୋଭା ବିଶେ । ପଦ ।
କିଶୋର ବୟସ ତାର ରୂପ ବିଶେ ମନୋହର
ନାଗରୀଙ୍କ ଚିତ୍ତଚୋର ନଟବରବେଶେ । ୧ ।
ମନେ କର ବିବେଚନା ଜାଣେ କି ମନ୍ତ୍ର ରଚନା
ଯେଣୁଥାଇ ଗୋରଚନାବିନ୍ଦୁ ଭାଲଦେଶେ । ୨ ।
ମନରେ କି ଦ୍ୱେଷ ବହି ଅବଳା ବଧିବା ପାଇଁ
ଜାଣିଲୁ ନିଶ୍ଚୟ ବହି ଆଣିଛି ଏ ଦେଶେ । ୩ ।
ବନମାଳୀ ଦାସ ଭଣି ସେ ପରା ମୁରଲୀପାଣି
ପରଚେ ହେଲେ ତାଠାରେ ଜାଣିବୁ ତୁ ଯେ ସେ । ୪ ।

ରାଗ—ପରଜ, ତାଳ ଝୁଲା ।

ଲଳିତା—

ବଢ଼ାଏ ମୁରଲୀପାଣି ସେ ଭଲାଠାଣି । ଘୋଷା ।
ଦକ୍ଷିଣ ବାମକୁ ଜିଣି । ତାଙ୍କର ଅପାଙ୍ଗ, ଶରଙ୍କୁ କରତ, ପକାଇ
ମରମ ହାଣି । ୧ । ଦନ୍ତଇନ୍ଦୁ ନୀଳମଣି । ବିଳକ୍ଷପକ୍ଷରେ, ନକ୍ଷତ୍ର
ମାଳିକା, ଛିଙ୍କିଙ୍କି ଲୁଛନ୍ତି ଅଣି । ୨ । ବରଜରାଜରମଣୀ । କେତେ

ସୁକୃତରେ, ଏ ପୁଅ ପାଇଛୁ, ବଲା ଭଲା ସୁଲକ୍ଷଣୀ । ୩ । ଯେ ଧରିବ ଏହା ପାଣି । କୃତାର୍ଥ ତାହାର, ରମଣୀ ହେବାର, ବଳମାଳୀ ଭଣେ ଭଣି । ୪ ।

---

ରାଗ—କେଦାର । ତାଳ ସ୍ୱରମାନ ।

ଏକ ଗୋପୀ—

ମିତ ଅମ୍ଭ ଶ୍ୟାମଚନ୍ଦ୍ର କ ଶୋଭା ବିଶେଷ ଗୋ । ଘୋଷା ।

ଅଖଣ୍ଡ ଶୋଭା ମଣ୍ଡଳ, ଶିଖଣ୍ଡମଣ୍ଡନ ଚୂଳ, କ ଖଣ୍ଡ କଜ୍ଜଳରେଖନ୍ତୁ ପରଶେ ଗୋ । ୧ । ଭ୍ରମରୀ ସୁଷଲଦର, ପଚ ତା ବାଣୀ ଝର୍ଝର, କଗତି ମନ ମଣ୍ଡଳୀ ଜ ରସେ ଗୋ । ୨ । କୋଦେ ଭୁରୁମକମାଣ, ତା ନେତ୍ରବାଭକ୍ତ କୋଣ, ମାର ମାରଗଣଗଣ ବରଷେ ଗୋ । ୩ । ତା ମୋହନ ସ୍ମିତଭଣିରୀ, ଭୁଲେ ସୁର ତଳ ପଚ, ଲୁଦର ସୁଦରପଣ ହରଷେ ଗୋ । ୪ । ଶରଦରଜନୀଈଶ, କୋଟେ ତା ମୁଖ ଝଟାସ, ସେଡ ଲକ୍ଷ୍ମୀଅଛୁ ନାଶ ଦରଶେ ଗୋ । ୫ । କୃପାମୟ ଅବତାର, ଘମା ଈଶ୍ୱରଦେବତାର, ହେଲେ ବିନ ନେବ ତାର ପରଶେ ଗୋ । ୬ । ଲାବ ଦେଇ କୋଟୁ ଅବା, ଅବସର ସୁବାଇବା, ତା ପଦତଳ ଉର୍ମିବ, ଭରସେ ଗୋ । ୭ । କହଇ କବଭପନ, ଧାଉଥିଲେ ତା ଲପନ, ସ୍ୱର୍ଗସୁଖେତ ମୋ ମନ ନ ରସେ ଗୋ । ୮ ।

—:o:—

ରାଗ ସୌରାଷ୍ଟ୍ର । ଝୁଲା ।

ଦୂଷ୍ଟ—

ଦିନୁ ଦିନୁ ନନ୍ଦନନ୍ଦନ ଗୋ ନବ ନବ ପରା ମିତ ।
ଛବି ଦେଖୁଥିଲେ ପ୍ରୀତି ବଢୁଥାଇ ଉପୁଚି କୁହଇ ଚିତ୍ତ । ପଦ ।
ହାସରେ ସଖୀ ଭାଷରେ ତାର ପୀୟୂଷ ଯେ ଥାଇ ପୂର ।
ଶ୍ରୁତିରେ ପଶି ଧୃତି ନାଶଇ ବୃନ୍ଦ ତେଜଇ ନାସ୍ତି । ୧ ।

ଖଞ୍ଜନ ମୀନ ଗଞ୍ଜନ ମୃଗ ବଞ୍ଜନୟନ ତାର ।
ଝଟିରେ ପଡ଼ି କାଢି ମାରଇ ଛାଡ଼ି ମଦନଶର । ୨ ।
ସ୍ଥଡ଼ି ସବୁ ସଜାଡ଼ିଲା ତନୁ କେତେ କାଳ ବସି ବହୁ ।
କାମ ହୋଇଲେ ଧାମ ହୋଇବ ଶ୍ୟାମ ମୂରତି ଚାହୁଁ । ୩ ।
ବନମାଳୀ ବୋଲେ ମନ ମିଳିଗଲେ ବଶୋର ନ ପାରେ ଅଖି ।
ଯେତେ ଚତ୍ରେ ଲାବୁଥିଲେ ପୁଣି କେତେ ନୂଆ ନୂଆ ବିଶେଷ ସଖି ।୪।

---

ଦ୍ୱିତୀୟଦୃଶ୍ୟ ।

( ବୃନ୍ଦାବନେ କଦମ୍ବମୂଳେ ଶ୍ରୀପତି ଓ ଦୂତୀ । )

ରାଗ ଶୋକକାମୋଦୀ । ଅଠତାଳୀ ।

ଦୂତୀ—

ଶ୍ୟାମନାଗର ହେ ଏ ବେଶ ହୋଇବ ନାହିଁ । ଏ ବେଶ ଦେଖିଲେ ପାଷାଣ ତରଳେ ଯୁବତୀ ବଞ୍ଚିବେ କେହୁ । ଘୋଷା ।

ଉଭା ହୋଇଥିବ କଦମ୍ବର ମୂଳେ ନଟବରବେଶ ହୋଇ । ହେଜଥିବ ଯେବେ ମୋହନମୁରଲୀ ଅଧରେ ଚୁମ୍ବିବ ନାହିଁ । ୧ । ପିନ୍ଧିଥିବ ଯେବେ ପୀତାମ୍ବର ଝୁମ୍ପେ ଭୂମିରେ ଲୋଟିବ ନାହିଁ । ହସୁଥିବ ଯେବେ ମୃଦୁ ମୃଦୁ ହୋଇ ତେରଛେ ଚାହିଁବ ନାହିଁ ।୨। ହେଉଥିବ ଯେବେ ଚନ୍ଦନର ଚନ୍ଦ ଟେଗ ରଚନା ଥିବ ନାହିଁ । ବାନ୍ଧିଥିବ ଯେବେ ତ୍ରିଭଙ୍ଗିମା ଚୂଳ ଚନ୍ଦ୍ରିକା ଶୋଭିବ ନାହିଁ । ୩ । ଯେତେ ବେଷ ଭୋଗେ ମନା କଲ ଶ୍ୟାମ ତେଜେ ବେଶ ହେଲ ଭୁହୁ । ବୋଲେ ବନମାଳୀ ଶୁଣ ହେ ବୁଝିବେ ଏ ବେଶ ରାଧାଙ୍କ ପାଇଁ । ୪ ।

ରାଗ ଭୈରବୀ । ତାଳ ଝୂଲା ।

ଶ୍ରୀପତି—

ମଦାଳସୀ ମନେ ବସି ନେତ୍ର ତାଳି ବାଳେ ଗୃହୁଂ ଗଲା ରେ ।

ଘୋ.ଷା ।

ଧନ୍ୟ ତାର ଶ୍ରୀମୁଖଶଶୀ । ଗଗନୁ ବ ପଡ଼ିଛୁ ଖସି । ମୋ ଧୈର୍ଯ୍ୟ-ଗୁଣକୁ ପ୍ରସାର ତରଙ୍ଗେ ବଳେ ଅକର୍ଷଣ କରୁଥିଲା ରେ । ୧ । ଭ୍ରୁରୁ ଚାପ ଅଞ୍ଜନ ଗୁଣ । ସନ୍ଧି ତହୁଂ କଟାକ୍ଷବାଣ । ରୋଷରେ କ୍ଷିପ୍ରରେ ରମଣୀ ମୋ ପରେ ପଦେ ପଦେ କରି ବକୁଥିଲା ରେ । ୨ । ଝୁଲେ ଶୋଭେ ଅଳକାପନ୍ତି । ଦିଶେ ଯୁବା ଧଇର୍ଯ୍ୟ ମନ୍ତ୍ରି । ତଥି ପାଶେ ବସାଉଛୁ ଚନ୍ଦ୍ରଝୁମ୍ପେ ମାନସକୁ ଝାମ୍ପି ନେଉଥିଲା ରେ । ୩ । ମଣ୍ଟି କଡ଼ୀ ଭଲେ ଝଲକା । ଝଲକାଇ କରଇ ଶଙ୍କା । ତାଙ୍କର ଜ୍ୟୋତି ଶୁକ୍ର ବୃହସ୍ପତି ଜ୍ୟୋତିମାନ କରି ମୋହୁଥିଲା ରେ । ୪ । ହରିବଂଶାର୍ଣ୍ଣବ ଉଦ୍ଭୂତ । ଭଗୀରଥ ଭୂଦେବପତି । ବାଦ୍ୟାହୁର ଚନ୍ଦ୍ର ସ୍ୱପେ ଚନ୍ଦ୍ରାନନୀ ଛମୃବେଦା-ଶିଶ୍ରୀ ଦେଉଥିଲା ରେ । ୫ ।

—ঃ।ঃ—

ରାଗ ସୋମ । ଅଡ଼ତାଳୀ ।

ବୃନ୍ଦା—

ଅତସୀକୁସୁମ ସମ ଶ୍ୟାମ ଦେହ ମୁଁ ଗଲିଣି । ପଦ ।

ଅଳୀ ଅମୃତ ହବନ ଅସହ୍ୟ ଯେ ପେ ବନ ଅବଶ୍ୟ ତା ଛାମୁରେ ମୁଁ ନିବେଦନ କଲଣି । ୧ । ଅବକତ କଲେ ମୁଖ ଅଖଣ୍ଡସୁଧାମୟୂଖ ଅବର ସରବ ମୋର ଛୀଇଲେଦେଁ ମଲଣି । ୨ । ଅଧ ଅଧରରେ ସ୍ମିତ ଉଲସି ଦେଲେ ଲକ୍ଷିତ ରହୁବ ଏହୁଟି ବୋଲି କୃପାକଲ୍ପବଲ୍ଲୀଟି ॥ ଅତୃଷ୍ଣ ବଳୁଁ ଯଶୋଧା ଅଙ୍ଗୀକାର କଲେ ସହୁ ଅଭ୍ରବେ ଉଚ୍ଛନ୍ନ ଦେବ ଏ ପକ୍ଷବପଲ୍ଲୀଟି । ୪ । ଉଗ୍ର ବର୍ଦ୍ଧିଶ ନୂପୁର ଉପବନ ଗୋପପୁର

ଅଣସ୍ ନୋହବ ଗୋବର୍ଦ୍ଧନଗିରଦଣ୍ଡ । ୫ । ଅଷ୍ଟଦୁର୍ଗନାଥ ଘରେ
ଅଟା ଧାରେନ ବଂଶୋଦ୍ଭ ସେ ଅଖିଳ-ଜନନୀ-ନାସା-ମୃଗମଦବନ୍ଦନ୍ତ ।୬।

—*—

ରାଗ ମୁଖାରୀ । ତାଳ ଝୁଲା।

ଶ୍ରୀପତି—

ହୃତି ଚଳ ରେ । ଋତିଦାୟିନୀ ଜନା ଭେ ବଳ ରେ । ସୁଖୁଷ-
ଉତ୍କଣ୍ଠା ଉଷା ଉଦ ରଷା ଉଦବାରେ ବାରେ ଘଳ ରେ । ଘୋଷା ।
ଚରମାଚଳ-ଚୂଳ ରଙ୍ଗ ମଣ୍ଡିଲା ଛଳ କଦବାକୁ ଗୋଲ ରେ ।
ଅଂଶୁକଚ୍ୟୁତ ଅଂଶୁକ ଭାଗ ବାମ ଥୋଇଲାନ୍ତି ଅନୁକୂଳ ରେ । ୧ ।
ଯାଷାଡରେ ଦେଖ ହୋଇଛୁ ପ୍ରତ୍ୟକ୍ଷ ଜଞ୍ଜ୍ୟାତ ଯା ଷଡଦଳ ରେ ।
ବକ୍ଷ-ଲକ୍ଷ୍ୟକୁ ଖାଷମୁଖ ଶିଳୁଖ କନ୍ତୁରୁ ଯା ବାଣଫଳ ରେ । ୨ ।
ଯାନ ଦେଲାଣି ମଙ୍ଗଳ ଦେବାର୍ଚ୍ଚନ ବଜସ୍ ଆନତି ଯାଳ ରେ । ପୂର୍ଣ୍ଣ
ମୃଗାଙ୍କ ରଜତଥାଳୀ ଅଙ୍କ ଜବାପନ ଧୂମଜାଳ ରେ । ୩ । କହୁବ
ସ୍ୱଦସ୍ତ ଥିଲେ ସୁହୃଦସ୍ତ ନବଦୁର୍ମେଘପାଳ ରେ । ଉରଜ ଉଲଟ
ପଟ ଭେଣୀ ଫଣୀ ଦେଖାଇ ତା ଶୁକ ଟାଳ ରେ । ୪ ।

ଦ୍ୱିତୀୟ ଦୃଶ୍ୟ ।

ଉଦ୍ୟାନ ।

———

(ଲତା ବିତାନରେ ଶ୍ରୀମତି, ଲଳିତା ଓ ବିଶାଖା ଉପବିଷ୍ଟ )

ରାଗ କାମୋଦୀ—ତାଳ ଏକତାଳୀ ।

ଶ୍ରୀମତି—

କାହିଁରେ ମନ ସହୁ । ପ୍ରସନ୍ନ ହେଉ ନାହିଁ । ଏଥିକ କହ କେଉଁ
ଗତିକ ରେ । ଢ କଉ ଅରଜିବ ଢ କଉ ବରଜିବ ସେ ନବଘନ-
ଶ୍ୟାମ ଶ୍ରୀଚକ ରେ । ଘୋଷା ।

ଯୁଗଠାରୁ ଅଧିକ । ହୋଇଲାଏ ପଲକ । କେମନ୍ତେ ସମ୍ଭାଳବ

ଧୃତିକି ରେ । ତ୍ରିଭୁବନମୋହନ । ବଙ୍କିମ ବଂଶୀସ୍ୱନ କାହ୍ନୁ ଗୁମ୍ଫିଲା ମୋର ଶ୍ରୁତିକି ରେ । ୧ । ଇନ୍ଦ୍ରନୀଳକବାଟ ପୃଥୁଳୁଚ ସେ ନଟବର-ମୁକୁଟ-ମଣି-ଛଟିକି ରେ । ମାନସେ ଧ୍ୟାଇ ଧ୍ୟାଇ । ସଭେ କି ସ୍ତୁତି ଦେବ । କୁଳବରତ ନୀତି ଛାଡ଼ିକି ରେ । ୨ । ଗଉଣ ଗିରି ଏଡ଼ା । ରତନନନ୍ଦନୀ ସେବା । ବର୍ତ୍ତରେ ବଳାଇବ ମତିକି ରେ । ଦେବ ଶ୍ୟାମ ସଙ୍ଗତି । ଲଭି ସୁଖସ୍ୱାଦ । ମଣ୍ଡଳେ ଟେକାଇବ ଛତିକି ରେ । ୩ । ତକୁଚୋଞ୍ଚି ସରେ ବେନେ । ଯୋଡ ତଳିବ କୋଳେ । ସେ ନବକିଶୋର ମୂରତିକି ରେ । ପରତେ ନାହିଁ ମୋର । କଲଭେ ମଦନର । ନ ବସି ପାରିବ ବରତିକି ରେ । ୪ । କହେ ଶ୍ରୀ ସ୍ରେଠଦାସ । ନୃପତି କୃଷ୍ଣଦାସ । ନେତ୍ରେ ଲଗନ କଣ୍ଠାପତିକି ରେ । ଦେଖାଇ ଦେଇ ଥରେ । ଏବେ ଧ୍ୟାନପଥରେ । ପକାଇ ଦେବେ ଅଙ୍ଗୀରଚିକି ରେ । ୫ ।

---

ଗୀତ ପରଜ ବସନ୍ତ । ଏକତାଳୀ ।

ଲକ୍ଷଣା—

ପୀରତିପଥ ଖସଡ଼ା ରେ, ସଙ୍ଗିନ, ନ ଜାଣି ତହିଁକି ପଦ ବଡ଼ାଇଲେ ପଦପଦକେ କଚଡ଼ା ରେ । ଘୋଷା ।

ଚତୁଣ ମଞ୍ଜୁଳ ଶିଳରେ ଗଇଳ ହୋଇଣ ଅଛଇ ଇଡ଼ା । ଆଉ ଗୁଳଭାର ଅଧିକ ଗୋଦର ହୋଇ ପାରୁ ନ ଛଡ଼ା ରେ ।୧। ତପି ପଦାଙ୍ଗୁଳ ସ୍ଥିରେ ବେଳ ଗଳ ଦୃଷ୍ଟିପଥକୁ ନ ଛଡ଼ା । ନୋହୁଲେ ଯେ ଜନ କହନ୍ତୁ ସେବନ ତାର ପଚ୍ଛେ ପଚ୍ଛେ ଗୋଡ଼ା ରେ । ୨ । କେବଳ ଏ ଘାଟ ଯିବାର ନକ୍ଷଟ ବଚନେ ନୂଆଇ ବ୍ରୀଡ଼ା । ଯେବେ ତୋର ଜନ୍ମ ବୃଦ୍ଧିବଳ ଅଛୁ ଚରଣ ତହିଁକି ବଢ଼ା ରେ ।୩। ଜ୍ୱସ୍ତିବେ ଗୋ ସଖି ଲଗାଇଏ ଦେଖି ଅଧିକ ହୋଇବ ପୀଡ଼ା । ବନମାଳୀ କହୁ- ଯେବେ ପାରୁ ଯାଇ ସୁକୀର୍ତ୍ତି ପତାକା ଉଡ଼ା ରେ । ୪ ।

—*○*—

ରାଗ କାମୋଦୀ । ତାଳ ଅଠତାଳୀ ।

ଶ୍ରୀମତୀ—

ଦିନେ ନ ଡାକବୁ ରାଧିକା ବୋଲି,
ମୁରଲି, ତୋତେ ଶରଣ ଗଲି । ଘୋଷା ।

ତୁ ନନ୍ଦସୁତ ମୁଁ ଭାନୁକୁମାରୀ, ବଂଶୀ ହେଲୁ ସିନା ପରତେ କର । ୧ । ଲୁଚାଇ ଯାଏଁ ସଖି ସଙ୍ଗତେ, ତୁ ଯେଣୁ ଚହଟିଲୁ ମୁରଲି ମୋତେ । ୨ । ଛାଡି ତୋର ବଣାବାଉଁଶ ଖଣ୍ଡ, ଧ୍ରୁବ ସଙ୍ଗେ ଥାଇ ପଞ୍ଚମକାଣ୍ଡ । ୩ । କୃଷ୍ଣହସ୍ତ ବଂଶୀ ହେ ଦୟନ୍ତା ମୋତେ, ଭସାଇ ଦିଅନ୍ତୁ ଯମୁନା ସ୍ରୋତେ । ୪ । ମୁରଲିର ଶୁଣି ଏତେକ ବଡ଼ାଇ, ପଡିବୁଡା ବୁଡ଼ ଦିଏ ଛଡ଼ାଇ । ୫ । ବନମାଳୀ ବୋଲେ ଚିନ୍ତା ନ କର, ଅବଶ୍ୟ ଆସିବେ ମୁରଲୀଧର । ୬ ।

—•○•—

ରାଗ ଏଲକାରକାମୋଦୀ । ଏକତାଳୀ ।

ବିଶାଖା—

ଦେଖିଲେ କାହ୍ନୁ ମନ ନ ଯିବ ଗୋ । ଯଉବନ ଭର ତନୁ ସହିବ ଗୋ । ନବନୀରଦଜେତୁ ତମାଳପତ୍ରଗାତ୍ର କାମବରରେ ତନୁ ରାଞ୍ଜିବ । ଘୋଷା ।

ଦିନେ ଦେଖିଲି ତୋଟେ, କେଳିକଦମ୍ବମୂଳେ, ଅନନକୁ ଲକ୍ଷ ନ ସହିବ ଗୋ । ୧ । ଦେଖିଲେ ତାଙ୍କ ନୃତ୍ୟ, ନ ସ୍ଥିର ହେବ ଚିତ୍ତ, ରୂପ ତାଠାରେ କେ ନ ମଜ୍ଜିବ ଗୋ । ୨ । ଦିନେ ସେ କୁଞ୍ଜବନ ଦେଖି ହେଲି ଅଜ୍ଞାନ, ସେଦିନ ହୋଇଅଛି ଭାଜିବ ଗୋ । ୩ । ବୋଲଇ ବନମାଳୀ, ଶ୍ୟାମଚନ୍ଦ୍ରକୁ ଭଜ, ସତେ ପିଣ୍ଡ ତେଜିବ ଏ ଜୀବ ଗୋ । ୪ ।



## ଚତୁର୍ଥ ଦୃଶ୍ୟ ।

ବୃନ୍ଦାବନେ

( ସୁଦାମ, ସୁବଳ, ଶ୍ରୀପତି ଉପବିଷ୍ଟ । )

ରାଗ ପୁରବୀ—ତାଳ ଝୁଲା ।

ଶ୍ରୀପତି —

ଥିବ ସେ ପ୍ରୀତିକି । କେବଳ ମନ୍ତ୍ରି ପକାଏ ସ୍ଥିତିକି । ପଦ ।

ପ୍ରୀତି ପରକାର ବଡ଼ର ବଡ଼, ସୁବଳ ଅଗେ କହନ୍ତ ଶ୍ରୀବତ୍ସ; ପ୍ରଥମ ଲେଟ ବଢ଼ିଲା ଉଗ୍ରତେ, ମଧ୍ୟସ୍ତ ଅବର ହୁଏ ପଦିଂରେ ।୧। ସନ୍ଧ୍ୟାବେଳରେ ଛ ସନ୍ଧୁ ନ ଥାଏ, କେବେ ହୁଡ଼ି ଦେବ କେଉଁ ବ- ଥାଏ, ବଳାତ୍କାରେ ଉଦ୍ଧି ପଡ଼ିଲ ଗଣ୍ଡି, ବଳନ୍ତେ ସେ ଯେବେ ନ ଗଲା ଫିଟି ଯେ । ୨ । ନିର୍ମଳହୃଦ ସାର ଦରପଣ, ଛନ୍ଦି କାଚ ଦେବ ଲକ୍ଷ ପୂର୍ଣ୍ଣ, ଅନୁରାଗ-ବୃଷ୍ଟି ପଡ଼ନ୍ତ ବଳେ, ନ ଯାଇ ଯେବେ ସେ ରହିଲା ତିଳେ ରେ । ୩ । ସୁଦ୍ର ନଦୀପରି ବଢ଼ି ଅସିବ, ନେକନ୍ଦ୍ରୁଳଯାକ ବୁଡ଼ାଇ ଦେବ, ଷଣକ ଭିତରେ ଶୁଖି ପଡ଼ିବ, ଏମନ୍ତ ପ୍ରକାରେ ଯାହାର ଭାବ ଯେ ।୪। ପ୍ରବର୍ତ୍ତି କର ବନ୍ଧୁତ ବପଦ, କରତି ପଦ୍ମାଉ- ଖିବ ସୁହୃଦ, ସଦାଶିବ କହେ ଜାଣି ଉପାୟେ, ନ କଲା ଯେବେ ସେ କହିବା ଯାଏ ରେ । ୫ ।

— ୦○*○୦ —

ରାଗ ଅଷ୍ଟାବସ୍ତ୍ର—ପଦ୍ମପଞ୍ଚ ।

ସୁବଳ —

ପ୍ରୀତିଶ୍ରୀତିଙ୍କ ବଷମ । ଯହିଁ ନାହିଁ ତାରତମ ରେ । ପଦ ।

ଷାନ ବଡ଼ ଯାହା ବୋଲନ୍ତିବାରେ ଯେଉଁ ସବୁ ଏ ମନର ଭ୍ରମ । ମଧୁ ଯେବେ ଅଛ ମଧୁପକୁ ତେବେ ଲୁଟଇ କମଳ ସମ ରେ । ୧ । ହରି ବସିବର ବଣିକ ପରସ୍ପେ ଗନ୍ଧ ପ୍ରେମ-ରତ୍ନ କମ । ଭୁଭ ଦଣ୍ଡେ

ଗ

ଶିଖା ଭଙ୍ଗିବା ଜାଣଇ ଅନେକ ନାହିଁ ପରଶ୍ରମ ରେ । ୨ । ଛାତି ଖୁଲଣ୍ଡୀଲ ଲାଜ ବ୍ୟବହାର ମଣଇ ଏ ଅନୁପମ । ଦଉଦ୍ରା ରୂନଙ୍କୁ ଏକତ୍ର ବସିଲେ ଚାଉ ଦେଖାନ୍ତି ବେ ଯମ ରେ । ୩ । ବନ୍ଦର ଶେଷର ନାଗର କଥାକୁ କରେ ପରବତ ସମ । ମୁଖ ଭ ଦେଖିଲେ ଦୁଃଖ ଘୋର ଅସେ ଛଡି ହୁଏ ଦମ ଦମ ରେ । ୪ ।

---

## ଶୁଭ ଜଙ୍ଗଲା—ଭାଲ ଅବି ।

ଧୁଦାମ—

ଜଗି ଜଗି ପର ଯାଚି ଜ ଛାତି ଫୁଲୁଇ ।
ଉଦ ପର ଦୁଇ ଲୋକେ ଜଦା ଭାଇ । ଘୋଷା ।
ପ୍ରଭୃତ୍ ପ୍ରତିଷ୍ଠା ପଣ    ମାନ ଗଉରବ ଗୁମାନ ।
ଦେଖୁ ଦେଖୁ ତାହା ମାଗି ସମସ୍ତ ହରାଇ । ୧ ।
ସୁଖ ସ୍ନେହ ଅନୁରାଗ    ତା ଗୁଣ ପ୍ରେମ ସୁଅର ।
ସୁମର ସୁମର ନେତ୍ରୁ ଲୋତକ ଝରାଇ । ୨ ।
ସଂଯୋଗେ ଉତ୍ସ ଜ ଛୁର    ବଜ୍ଜେଦେ ଦୁଃଖ ଅପାର ।
ମାଭ-ବରତରେ ମରମକୁ ସେ ଚରଇ । ୩ ।
ହୃଦେ ଜଳେ ଜାଗାଇଲ    ବଇଲ ମହା ଅନଳ ।
ମନ ବଚନ କାୟକ ତା ପାଶେ ଧରଇ । ୪ ।
ଉଜାଗର ଚଣି ଦିନ    ତାହାର ନାମ ରଜନ ।
ମୋହ ମୂର୍ଚ୍ଛା ଯଗି ଗଡ଼ିଦେବକୁ ଥରାଇ । ୫ ।
ଛୋଡ଼ିଲେ ତାହାର ସଙ୍ଗ    ପଡ଼ୁ ସମସ୍ତ ପ୍ରସଙ୍ଗ ।
କୁଳ ଅଭିମାନ ସବୁରକୁ ପହଁରାଇ । ୬ ।
ଯେ ଉପଲ ଏ ଉଦରେ    ଘଟନେ ବିଜ ନ ସରେ ।
ବୋଲେ ରାମକୃଷ୍ଣ ଚେକ ମନକୁ ବରାଇ । ୭ ।

---

ରାଗ କେଦାରକାମୋଦୀ—ତାଳ ଝୁଲା ।

ସୁବଳ—

ବଚନ୍ତୁ ପ୍ରେମ ଜଣା ଦଉଛି । ଶୀଘ୍ର ନେଲେ
ପ୍ରାଣ ଯାଏ ରହି । ଘୋଷା ।

ଯେଡ଼ିକ ଅଶେ ଜାଣିଥାଇ ରହି । ତେତ୍ତିକ ବିଷଉ ଭଏ ହଉଛି । ୧ । ନ ବାଟର ଆଉ ହୃଦରେ ଛତି । ଏ ଗଣ୍ଠି ପଡେ଼ ସେ କୃଷ୍ଣର ଯେତି । ୨ । ସଙ୍ଗ ଉତ୍ସୁ ତାପ ବିସନ୍ତ୍ର ଜାତି । ସଡ଼ିକ ଘଡି ଚେଉା ଯାଏ ବଢ଼ି । ୩ । ଶଳବଚନ କହୁଥିବ ଛୁଟି । ଚଚଧ ଉପାଧ୍ୟେ ନ ଯାଏ ଛୁଟି । ୪ । ଧନ୍ୟ ଏ ବନ୍ଧେ ଯେ ଅନ୍ତୁ ପଡ଼ି । ନ ଜାଣେ ତା ବନମାଳୀ ସନାତି । ୫ ।

---

ପଞ୍ଚମ ଦୃଶ୍ୟ ।

(ପ୍ରକୋଷ୍ଠ)

—*—

(ଶ୍ରୀମତୀ, ଲଳିତା, ଚମ୍ପକା ଓ ବୃନ୍ଦା ଉପବିଷ୍ଟା ।)

ରାଗ—କରୁଣାଶ୍ରୀ ।

ଲଳିତା—

ପ୍ରୀତି ଲାଗି, ହେବ ଶରା, ତାଳ ଚଉତାଳୀ । ଘୋଷା ।

ପଲଘ ପଲଘ ଚଢ଼େ । ଉଲ୍ଲୁ ଘ ପଡ଼ୁ ଅନଣ । ବଜଭିତାର ଛେଶ ଉଚ୍ଚ ଦେଲାଣି ଦେଶ । ହେବ ପରା ଜନ୍ମ-ଅନୁଭାଗୀ । ୧ ।

କୃଷ୍ଣଯୋଗ ଧ୍ୟାନ ପଥ । ଉଦ୍ଧାରନେ କେତୁ ଶୋଷ । ଏଭାବେ ମଉନ୍ତ ଧର । ଉତ୍କୃଷ୍ଟ ଭବଜଯୋର । ବସିଲ୍ଲଣି ବିବାହଶା ଭାଗି ରେ ।।

ମୂର୍ତ୍ତିମୁଣିତ ଅଞ୍ଜନ । ଅବର ବେଶଭୂଷଣ । ଚିତ୍ରଜନ ପର୍ଯ୍ୟନ୍ତ । ମଣ୍ଡ ପୁରଶ୍ଚରଣ । ପଣ୍ଡିତ ଭବୁଚି ହୋଇ ଲାଗି ରେ । ୩ ।

ଅପାଙ୍ଗ ସୂତ୍ରରେ ସିଝିଁ । ତାହା ମନ ବାନ୍ଧନ୍ତି ହିଁ । ମଣିଏ ପନ୍ତୁ ଛଅଇଁ । ପରମାନନ୍ଦ କହଇ । ଶିବୁ ପରା ପ୍ରୀତି ଭିକ୍ଷା ମାଗିବେ ।୩।

ରାଗ ଝିଂଝୋଟ—ତାଳ ଝୁଲା ।

ଷାଖା—

ପ୍ରୀତି କୃଷ୍ଣ ଷାଣ ଦିଅ ରେ । ବାନ୍ଧିବ ଛନ୍ଦିବ କର ଲୁହା ରେ । ଘୋଷା ।

ସ୍ନେହ ଲୁହା ଯତ୍ନେ ତତାଇ । ଅଶ୍ରୁଜଳ ତହିଁରେ ଦେଇ । ମାର ଘଗର ଯତନେ ଗଢ଼ିନ୍ତୁ ତହିଁରେ ବଳନ୍ତ ବସ ପିଅ ରେ । ୧ । ଅତି ବଡ଼ ଝଷ୍ଣ ସେ ଧାଇ । କେନ୍ତୁ ନ ଠାବଇ ତହିଁର । ନବୀନ ଦର୍ପଣ ପର ଝଟକଇ ସବୁଦିନେ ଦେଖ ବିଶେ ନୂଅ ରେ । ୨ । ସେ କ୍ଷୁଣ୍ଣିବ ଯେନ୍ତୁ ଲୁଣ୍ଟିବ । ଛାଡିଗଲେ ସବୁ ତେଜିବ । ନ ଅଇଲେ ଧପ ହସ୍ତେ ନାଶ ଯିବ । ପରହ୍ମମାନଙ୍କ ପ୍ରାଣଗୀଅ ରେ ।୩। ତୋଲେ ବନମାଳୀ ସେ ଛଟ୍ଟୁ । ସାନ ବଡ଼ ନୁହେ କାହାର । ଯାହା-ଙ୍କେ ଯେବେ ପୀରତି କରଇ ଭେଟିବ କରଇ କୃଅବୃଅ ରେ ।୪।

ରାଗ ପୂରବୀ—ତାଳ ଅଠତାଳୀ ।

ଘ—

ସଜନ ପର ପୀରତି ସାର । କଲେ ମିଳା ସ୍ୱର ଦୋଏ ଗୋଚର । ଘୋଷା ।

ପଡ଼ିଯାଏ ଯେବେ ନେତ୍ରରେ ନେତ୍ର । ପୁଲକେ ପୂର ଯାଇଥାଇ ଗାତ୍ର । ୧ । ଅନୁଚ୍ଛେଦ ହୃଦେ ଅଭଦ୍ର ବହୁ । କେବେ ବଳଉଣ୍ଡ ଅସର ବହୁ । ୨ । ତାହା ଧ୍ୱନି ହାସ ଦେଲେ ମୁଖରେ । ବସନ ନେଇ ଦେଉଥାଇ ଖରେ । ୩ । ପଡ଼ିବ ପଡ଼ି ଅନ ଅନ ବେଶ । ଦେବା ପାଇଁ ବଳଥାଇ ମାନସ । ୪ । ଚନ୍ଦ୍ରଶେଖର ଲୁପ ସ୍ୱଲେ ହୁ । ତୁଭ ମୃତ୍ୟୁ ଏହା ଗୋଚର ନାହିଁ । ୫ ।

ରାଗିଣୀ ବେଲାରୋ—ତାଳ ଝୁଲା ।

(ପ୍ରାଣସଙ୍କଟ ରେ ହେଲା ବଡ଼ ପରମାଦ, ସ୍ୱରେ)

ଚକ୍ଷାଣ—

ପରପୀରତିରେ ହାଦିଁଶ ମଜେ କାମିନୀ,
ହେଲେ ସ୍ନେହଜାତ ନୂତନ ଗୁପତ, ପ୍ରକାଶ ହୁଅଇ ଯତନୀ । ପଦ ।
ସଙ୍ଗେ ଧନଞ୍ଜୟ, ଗୁପତେ ପ୍ରଣୟ, କଲେ ଭଦ୍ର ଚଉମ୍ନିନୀ ।
ଜାଣିଲେ ତା ଜନେ, ଜଳକ୍ରୀଡ଼ା ସ୍ଥାନେ, ପ୍ରକଟ ମାତ୍ରେ ଯାମିନୀ ।୧।
ଅପଣାର ମନ, କରେ ସମର୍ପଣ, ପରେ ହୋଇ ପରାଧିନୀ,
ଶେଷେ ଅନୁତାପ ଦହନ ପ୍ରତାପ, ଭୁଞ୍ଜି କୁଳକଳଙ୍କିନୀ । ୨ ।
ସ୍ନେହ ସ୍ୱଭେ ଜଣି କଲେ ମଥାମଣି, ଶେଷକୁ ନ ଗୃହେଁ ପୁଣି ।
ଏପରି ପୁରୁଷେ, ଯେଉଁ ନାରୀ ରସେ, ଭୁଞ୍ଜ ପ୍ରେମପାଗଳିନୀ । ୩ ।
ଧର୍ମ ନ ପାରଇ, ମୁକ୍ତି ମଧ୍ୟେ ରହୁ ରଖିଲେ ଯତନେ ଅତି ।
ପର ସଙ୍ଗେ ପ୍ରୀତି ପରେ ସେହି ମତି, ଗୀତେ କହେ ନୀଳମଣି । ୪

---

ସଂଗ ଖମ୍ବାଜ—ଝମ୍ପାତାଳ ।

ବୃନ୍ଦ—

ପ୍ରୀତି-ସୁଧା କେ ଜାଣିଛୁ ଅନୁଭବ ବିନା ରେ । ପଦ ।

ଦିବାକର ନିଶାକର । କମଳ-କୁମୁଦ-ସର । ସବୃତ୍ତାନ୍ତ ହୋଇ-ଛନ୍ତି ଜଗତରେ ସିନା ରେ । ୧ ।

କ୍ଷୀର ନୀର ଅଗ୍ନି ଠାରେ । ରଖିଲେ ହେଲେ ସଧୀରେ । ପାବକ ନାଶକ ବାରୁ ତାର କରେ ମନା ରେ । ୨ ।

ପତଙ୍ଗ ପାବକ ଜଳ । ନାଶନ୍ତି ହେଲେ ପ୍ରବଳ । ହୋଇ ତହୁଁ କେହୁଁ ଜନ ହୁଅନ୍ତି ବିମନା ରେ । ୩ ।

ପଦ୍ମନାଭ ଦେବସଙ୍ଗ । ବଢ଼ି ବ୍ରଜଯୁବତୀସଙ୍ଗ । ସ୍ୱପନ୍ତି ଏପରି ଘୋର ହେବନ୍ତି ଯନ୍ତନା ରେ । ୪ ।

---

# ତୃତୀୟ ଅଙ୍କ ।

## ପ୍ରଥମ ଦୃଶ୍ୟ ।

(ପୁଷ୍ପବାଟିକା ।)

( ଶ୍ରୀମତୀ, ଲଳିତା, ବିଶାଖା ଓ ବୃନ୍ଦା ବିଚରଣ କରୁ କରୁ )

ରାଗ ଖମ୍ବାଜ—ତାଳ ଅଡ଼ତାଳୀ ।

ବିଶାଖା—

ମିତ ମୋ ଚିତ୍ତ କୌତୁକ ଜାଣିବେ । ଦୂତ କହିଲେତ ନ ଶେଷ ବାଣୀ । ଘୋଷା ।

ଏବେ ମୋ ଭରସା ବାହିଁରେ ନାହିଁ । ବାଧ୍ୟପ୍ରାଣ ଦେବ ସତ୍ୟ କହିଲ ମିତ । ୧ । ସଖିମାନଙ୍କ ସଙ୍ଗରେ ନ ମିଶୁ । ଉଦ୍ଧରେ ପ୍ରବରେ ବାହିଁବ ବସ୍ତୁ ମିତ । ୨ । ବଧୂଜନପଥର ଚରଣ ଚିହ୍ନ । କେତେ ଭଙ୍ଗ ମୋର ଉତ୍ତମ ଘାସେ ମିତ । ୩ । ସହାରଣେ ଅଙ୍ଗ ପୁଲକ କମ୍ପ । ଜଗନ୍ନ ନାରୀ ଚରଣରେ ବନ୍ଦେ ମିତ । ୪ । ଶ୍ୟାମଚନ୍ଦ୍ରରେ ମୋ ଚଞ୍ଚଳା ଚିତ୍ତ । ବୋଲେ ଜଗନ୍ନାଥ ଏ କଥା ସତ ମିତ । ୫ ।

---

ରାଗ ତୋଡ଼ିପରଜ—ତାଳ ଜପମାନ ।

ବୃନ୍ଦା—

ହେ ରମଣି । ବୃନ୍ଦାବନେ ଯେବେ ଯାଅ । ପୂର୍ବକରୁ ଶୀତ ସଙ୍କେତରେ ହେଉ ବାହିଁବ ପ୍ରୀତି । ଘୋଷା ।

ସ୍ନିଗ୍ଧ ଗମ୍ଭୀର ସଚନ୍ଦ୍ର କୁସୁମର ସହ ମନୋମୀନ ଶ୍ରେଣୀ । ଚନ୍ଦ୍ରଚନ୍ଦନ ଲବଙ୍ଗ ଯତନ କର କେହୁ କେହୁ ଶୁଣି ଯେ । ୧ । ମଳୟରେ ସହ କଳରବ ରହସବାର ସବୁରେ ଜାଣି । ବାହିଁବ ପଶ୍ଚିମେ

